ସରସ ଗ୍ରନ୍ଥମାଳା - ନା:-୧

କବିସୂର୍ଯ୍ୟ ବଳଦେବ ବିରଚିତ

# ହାସ୍ୟ କଲ୍ଲୋଳ

ସମ୍ପାଦକ:—ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର

ବଲଦେବ ରଥ ବିରଚିତ

# ଗୁପ୍ତ କଲ୍ଲୋଳ

ସମ୍ପାଦକ : ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର



# ହାସ୍ୟକଲ୍ଲୋଲ

ସମ୍ପାଦକ :
ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର

ପ୍ରଥମ ସଂସ୍କରଣ :
୧୯୭୫, ଜାନୁୟାରୀ ୨୭ ତାରିଖ (୧୦୦୦)

ମୁଦ୍ରାକର :
ଶ୍ରୀ ରାମଚନ୍ଦ୍ର ମିଶ୍ର
ଓରରପ୍ରେସ୍ କଟକ-୧

ପ୍ରକାଶକ :
ସରସ ସାହିତ୍ୟ ସମିତି
ପିଠାପୁର, କଟକ-୧

ମୂଲ୍ୟ :
ଟ ୧-୫୦ ପ : ମାତ୍ର

## କୃତଜ୍ଞତା ଜ୍ଞାପନ

ଏହି ପୁସ୍ତକର ମୁଦ୍ରଣ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀର
କର୍ତ୍ତୃପକ୍ଷ ଦୁଇଶହଟଙ୍କା ସାହାଯ୍ୟ ଦେଇଥିବା
ସରସ ସାହିତ୍ୟ ସମିତିତରଫରୁ ମୁଁ
ଗଭୀର କୃତଜ୍ଞତା
ଜଣାଉ ଅଛୁ ।

ସେକ୍ରେଟାରୀ

ପୁରାତନ ସାହିତ୍ୟରୁ ହାସ୍ୟରସାତ୍ମକ ରଚନାବଳୀ ସଂଗ୍ରହ ଓ
ପୁନଃପ୍ରକାଶ କରିବା ପାଇଁ ସରସ ସାହିତ୍ୟ ସମିତି
ଯେଉଁ ଉଦ୍ୟମ କରୁଛି ତାର ପ୍ରଥମ
ଫଳସ୍ୱରୂପ ଏହି ପୁସ୍ତକଟି ଗବେଷକ
ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ରଙ୍କ
ଦ୍ୱାରା ସଂଗୃହୀତ ହୋଇ
ପ୍ରକାଶିତ ହେଲା ।

ପ୍ରକାଶକ

# ଗ୍ରନ୍ଥ ପ୍ରବେଶ

ସ୍ୱାଦୁ ରସର କଲ୍ଲୋଳମୟ ଏହି 'ହାସ୍ୟକଲ୍ଲୋଳ'ଟି ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ଓଡ଼ିଆ ସାହିତ୍ୟ ରାଜ୍ୟକୁ ପ୍ରଫୁଲ୍ଲିତ, ସତେଜ, ସୁରମ୍ୟ କରି ପାରୁଛି । ପ୍ରଥମତଃ ଜଣେ ଶ୍ରେଷ୍ଠ କବିଙ୍କର ଏକତମ କୃତି ଭାବରେ ଏହା ସ୍ୱତନ୍ତ୍ର ଗୌରବର ଅଧିକାରୀ; ଦ୍ୱିତୀୟତଃ, ପ୍ରାଚୀନ ଯୁଗର ସୁବିରଳ ଓଡ଼ିଆ ଗଦ୍ୟ ରଚନା ମଧ୍ୟରୁ ଅନ୍ୟତମ ହୋଇଥିବା କାରଣତଃ ଏହାର ଐତିହାସିକ ମହତ୍ତ୍ୱ ରହିଛି; ତୃତୀୟତଃ, ପ୍ରାଚୀନ ସାହିତ୍ୟରେ ଶୃଙ୍ଗାରେତର ରସର ଶୋଚନୀୟ ଅଭାବ ଥିବାବେଳେ ଅବିମିଶ୍ର ହାସ୍ୟରସକୁ ଆଧେୟ କରୁଥିବା ଏହି ରଚନାଟିର ବୈଶିଷ୍ଟ୍ୟ ରହିଛି ଏବଂ ଶେଷତଃ ( ଏବଂ ମୋ ବିଚାରରେ ବିଶେଷତଃ ) ଏହାର ଉପର ଭାଗର ଚପଳ ହାସ୍ୟର କଲ୍ଲୋଳ ତଳେ ପ୍ରଚ୍ଛନ୍ନ ରହିଛି ଏକ ଚମତ୍କାର ଉପହାସ (Satire) ଯାହା ରସଶିଳ୍ପ ବିଚାରରୁ ଓଡ଼ିଆରେ ଯେପରି ଅପୂର୍ବ ସେହିପରି ସୁସମ୍ପନ୍ନ । ଆଜି ମଧ୍ୟ ଏହାର ଲୌକିକ ଭାଷାରେ, ବ୍ୟଙ୍ଗାତ୍ମକ ଶୈଳୀରେ ଏବଂ ଭାବର ଅଭିବମୀପୂତାରେ ଯେଉଁ ସବୁ ଅଭିନବତା ରହିଛି ତାହା ଆଧୁନିକ ଯୁଗର ଉଦୟର ପ୍ରାକ୍କାଳୀନ ଅରୁଣିମା ରୂପେ ଅଭିନନ୍ଦନୀୟ । ଏହି ପ୍ରକାରେ ଓଡ଼ିଆ ସାହିତ୍ୟର ଇତିହାସରେ ମହତ୍ତ୍ୱପୂର୍ଣ୍ଣ ଉଲ୍ଲେଖ ପାଇବା ପାଇଁ 'ହାସ୍ୟ କଲ୍ଲୋଳ'

ବହୁଧା ଅର୍ଦ୍ଧ । ଅଥଚ, ଘଟନାକ୍ରମେ, ସାହିତ୍ୟର ଐତିହାସିକମାନଙ୍କର ଯଥାଯଥ ଦୃଷ୍ଟିକୁ ଏହା ଆକୃଷ୍ଟ କରିନାହିଁ । ※

ପ୍ରାଚୀନ ସାହିତ୍ୟର ଐତିହାସିକ ଓ ଆଲୋଚକମାନଙ୍କର ଶୁଭ ଦୃଷ୍ଟି ହାସ୍ୟକଲ୍ଲୋଳରେ ନ ପଡ଼ିବାର ପ୍ରଧାନ କାରଣ ବୋଧହୁଏ ତାହାର ଦୁର୍ଲଭତା । ଯଦିବା ଏହା ବଳଦେବ ରଥଙ୍କ ରଚନାବଳୀ ମଧ୍ୟରୁ ସର୍ବପ୍ରଥମେ ( ଖ୍ରୀ ୧୮୭୨ରେ ) ମୁଦ୍ରିତ ହୋଇଥିଲା ଏବଂ ଚଳିତ ଶତାବ୍ଦୀର ଆରମ୍ଭରେ ଦ୍ୱିତୀୟବାର ଆତ୍ମପ୍ରକାଶ କଲା ତଥାପି ଏହା ବର୍ତ୍ତମାନ ବଜାରରେ ସଂପୂର୍ଣ୍ଣ ଦୁର୍ଲଭ । ସ୍ୱର୍ଗତ କୁଳମଣି ଦାଶ ଖ୍ରୀ ୧୯୬୮ରେ ତଦବଧି ପ୍ରକାଶିତ ବଳଦେବ ରଥଙ୍କର ସମସ୍ତ ରଚନାକୁ କବିସୂର୍ଯ୍ୟ ଗ୍ରନ୍ଥାବଳୀରେ ଗ୍ରଥିତ କଲେ ମଧ୍ୟ (ପ୍ରଥମେ ଚନ୍ଦ୍ରକଳାକୁ ମଧ୍ୟ ଛାଡ଼ି ଯାଇଥିଲେ କିନ୍ତୁ ପରେ ଯୋଗକଲେ) ଏକା ହାସ୍ୟକଲ୍ଲୋଳକୁ ଛାଡ଼ିଗଲେ । ଏପରି କରିବାର କାରଣ ଦର୍ଶାଇ ସେ ମତବ୍ୟକ୍ତ କରିଛନ୍ତି ଯେ "ଓଡ଼ିଆ ସାହିତ୍ୟରେ ହାସ୍ୟକଲ୍ଲୋଳର ସ୍ଥାନ ଅଛି ବୋଲି ମୋର ବିଶ୍ୱାସ ନୁହେଁ" (କବିସୂର୍ଯ୍ୟ ଗ୍ରନ୍ଥାବଳୀ, ପ୍ରଥମ ସଂସ୍କରଣର ଭୂମିକା) ବଳଦେବ ରଥଙ୍କର ଏକାନ୍ତ ଗୁଣଗ୍ରାହୀଙ୍କର ହାସ୍ୟକଲ୍ଲୋଳର ମୂଲ୍ୟାଙ୍କନରେ ଏତାଦୃଶ ଭ୍ରମରୁ ଅନୁମେୟ ଯେ ସେ ମହାଶୟ

---

※ ଏହି ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ଜାନକୀବଲ୍ଲଭ ମହାନ୍ତିଙ୍କ ଇଂରାଜୀରେ ଲିଖିତ ଓଡ଼ିଆ ସାହିତ୍ୟ (Oriya literature), ଡଃ ମାୟାଧର ମାନସିଂହଙ୍କର ଉଭୟ ଇଂରାଜୀ ଓ ଓଡ଼ିଆରେ ଲିଖିତ ଓଡ଼ିଆ ସାହିତ୍ୟର ଇତିହାସ, ପଣ୍ଡିତ ବିନାୟକ ମିଶ୍ରଙ୍କର ଓଡ଼ିଆ ସାହିତ୍ୟର ଇତିହାସ ଭଳି ବହୁ ଗ୍ରନ୍ଥରେ ବଳଦେବ ରଥ ଏପରି ଗୋଟିଏ ଗ୍ରନ୍ଥ ଲେଖିଥିବା ବିଷୟ ଜମାରୁ ଉଲ୍ଲିଖିତ ହୋଇନାହିଁ ।

ହାସ୍ୟକଲ୍ଲୋଳ ସଂପୂର୍ଣ୍ଣତଃ ପାଠ କରି ନଥିଲେ । ଅନ୍ୟଥା ହାସ୍ୟକଲ୍ଲୋଳ ପରି ବହୁ ବୈଶିଷ୍ଟ୍ୟଯୁକ୍ତ ରଚନାକୁ 'ଅସାହିତ୍ୟ' ଆଖ୍ୟା ଦେବା ଲାଗି କୌଣସି ଯୁକ୍ତିଯୁକ୍ତ କାରଣ ମିଳୁନାହିଁ । ଏହି ଅନୁମାନ ଦୃଢ଼ୀଭୂତ ହୋଇଥାଏ ଦାଶ ମହାଶୟ ହାସ୍ୟକଲ୍ଲୋଳକୁ 'ଗୋଟିଏ କବିତା' ବୋଲି ଜଣାଇଥିବାରୁ । ସେ ଲେଖିଛନ୍ତି ଯେ ବଳଦେବ ରଥ "ସ୍ୱୀୟ ପ୍ରତ୍ୟୁତ୍ପନ୍ନମତିବଳରେ ଷଟପଦ ହାସ୍ୟରସପୂର୍ଣ୍ଣ ଗୋଟିଏ କବିତା ଲେଖିବାକୁ ଆରମ୍ଭ କଲେ" ( କବିସୂର୍ଯ୍ୟ ଗ୍ରନ୍ଥାବଳୀ, ପୃ ୭୩) । ହଣ୍ଟରଙ୍କ ସୁବିଦିତ 'ଓଡ଼ିଶା' (ORISSA) ଗ୍ରନ୍ଥର ନବମ ଅନୁସୂଚୀରେ ପ୍ରଦତ୍ତ ଓଡ଼ିଶାର ସାହିତ୍ୟର ବିବରଣରେ ହାସ୍ୟକଲ୍ଲୋଳ ବଦଳେ ଲେଖାଅଛି ହାସ୍ୟାର୍ଣ୍ଣବ, ଯାହାକୁ ସେ ମଜାଳିଆ କବିତାର ସମାହାର ବୋଲି ବର୍ଣ୍ଣନା କରିଛନ୍ତି :—"(4) Hasyarnaba—comic verses ।" ଏଥିରୁ ବଳଦେବ ରଥଙ୍କର ଅଦ୍ୟାବଧି ଅନାବିଷ୍କୃତ 'ହାସ୍ୟାର୍ଣ୍ଣବ' ନାମକ ଏକ ହାସ୍ୟ କବିତା ପୁସ୍ତକ ହଣ୍ଟରଙ୍କ ଦୃଷ୍ଟିକୁ ଆସିଥିବା ସମ୍ଭାବନା ଉପୁଜୁଛି । ଅଥବା ଏହା ମଧ୍ୟ ସମ୍ଭବ ଯେ ହଣ୍ଟରଙ୍କ ଅନ୍ୟାନ୍ୟ ପ୍ରମାଦ ଭଳି 'ହାସ୍ୟକଲ୍ଲୋଳ'କୁ ହାସ୍ୟାର୍ଣ୍ଣବ ବୋଲି ଲେଖିବା ଏକ ପ୍ରମାଦ ଏବଂ ସେହି ଗଦ୍ୟମୟ ରଚନାଟିକୁ କବିତାବଳୀ ବୋଲି ବର୍ଣ୍ଣନା କରିବା ଅଧିକ ପ୍ରମାଦ । * ହଣ୍ଟରଙ୍କ 'ଓଡ଼ିଶା' ଲେଖାଯିବା ପରେ ପରେ ହାସ୍ୟକଲ୍ଲୋଳ ମୁଦ୍ରାଯନ୍ତ୍ରରୁ ପ୍ରକାଶ ପାଇଲା । ଏହାର ବହୁ ବର୍ଷ ପରେ, ଏପରିକି ହାସ୍ୟ-

* 'ହଣ୍ଟରଙ୍କ ଓଡ଼ିଶାରେ କବିସୂର୍ଯ୍ୟ' ନାମକ ପ୍ରବନ୍ଧରେ ବଳଦେବ ରଥଙ୍କ ସମ୍ପର୍କରେ ହଣ୍ଟରଙ୍କ ବିବରଣର ଅନ୍ୟାନ୍ୟ ପ୍ରମାଦ ବିଷୟରେ ସବିସ୍ତାର ଆଲୋଚନା କରିଛି ।

କଲ୍ଲୋଳର ଦ୍ୱିତୀୟ ମୁଦ୍ରଣ ପରେ ଖ୍ରୀ ୧୯୧୭ରେ ପ୍ରକାଶିତ (କିନ୍ତୁ ପ୍ରାୟ ତାହାର ଦଶ ବାର ବର୍ଷ ପୂର୍ବରୁ ରଚିତ) ପାରଳା-ଖେମୁଣ୍ଡିର ସ୍ୱର୍ଗତ ଅପର୍ଣ୍ଣା ପଣ୍ଡାଙ୍କର 'କବିଜୀବନୀ' ମଧ୍ୟରେ ବଳଦେବ ରଥଙ୍କ ଗ୍ରନ୍ଥ ତାଲିକାରେ ହାସ୍ୟକଲ୍ଲୋଳକୁ ସ୍ଥାନ ଦିଆ ନ ଯାଇ ହାସ୍ୟାର୍ଣ୍ଣବ ଉଲ୍ଲେଖ ପାଇବା ହେତୁରୁ ହାସ୍ୟକଲ୍ଲୋଳକୁହିଁ ହାସ୍ୟାର୍ଣ୍ଣବ ବୋଲି ଗୋଟିଏ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଯିବା ସ୍ୱାଭାବିକ ହୋଇଗଲା । ସ୍ୱର୍ଗତ କୁଳମଣି ଦାଶ ସେହି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ହାସ୍ୟକଲ୍ଲୋଳର ଆରମ୍ଭର କିଛି ଅଂଶରେ ମିତାକ୍ଷର ନିୟମ ଲକ୍ଷ୍ୟ କରି ହଣ୍ଟରଙ୍କ ହାସ୍ୟାର୍ଣ୍ଣବର ବିବରଣ ଏବଂ ଅପର୍ଣ୍ଣା ପଣ୍ଡାଙ୍କର ହାସ୍ୟାର୍ଣ୍ଣବର ବର୍ଣ୍ଣନା ଉପରେ ନିର୍ଭର କରି ହାସ୍ୟକଲ୍ଲୋଳକୁ 'ଗୋଟିଏ କବିତା' ବୋଲି ଲେଖି ପକାଇଲେ । ଦାଶ ମହାଶୟ ହାସ୍ୟକଲ୍ଲୋଳ ପାଠ କରିଥିଲେ ଏପରି ମତ ଦାନ କରି ନ ଥାନ୍ତେ । ଏହି ଦୃଷ୍ଟିରୁ ହାସ୍ୟକଲ୍ଲୋଳ ସାହିତ୍ୟର ଅପାଂକ୍ତେୟ ବୋଲି ସେ ଯେଉଁ ନିର୍ଦ୍ଧାରଣ ଦେଇଛନ୍ତି ତାହାକୁ କୌଣସି ଗୁରୁତ୍ୱ ଦେବା ଅନୁଚିତ ହେବ ।

ସାହିତ୍ୟର ସମାଲୋଚକମାନଙ୍କର ଦୃଷ୍ଟି ହାସ୍ୟକଲ୍ଲୋଳରେ ନ ପଡ଼ିବାର ଦ୍ୱିତୀୟ କାରଣ ହେଲା ତାହାର ଉଭୟ ସଂସ୍କରଣରେ ଥିବା ପାଠଗତ ଅଶୁଦ୍ଧିର ମାତ୍ରାଧିକ୍ୟ । ପାଞ୍ଚବର୍ଷ ତଳେ ଉତ୍କଳର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଉଭୟ ସଂସ୍କରଣକୁ ମିଳାଇ 'ଦିଗନ୍ତ' ସାହିତ୍ୟ ପତ୍ରିକାରେ କ୍ରମଶଃ ହାସ୍ୟକଲ୍ଲୋଳର ଏକ ସଂପାଦିତ ପାଠ ପ୍ରକାଶ କରିବା ଲାଗି ଏକ ପ୍ରଶଂସ୍ୟ ଉଦ୍ୟମ କରିଥିଲେ । କିନ୍ତୁ, ଦୁଃଖର କଥା, ହାସ୍ୟକଲ୍ଲୋଳ ଆଂଶିକ ପ୍ରକାଶିତ ହୋଇଥିବା ଅବସ୍ଥାରେ ଦିଗନ୍ତ ଲୋପ ପାଇଲା ।

ହାସ୍ୟକଲ୍ଲୋଳରେ ଦକ୍ଷିଣ ଓଡ଼ିଶାର ଲୌକିକ ଭାଷାର ସମଧିକ ପ୍ରୟୋଗ ରହିଛି । ସେହି ଭାଷା ସହ ତଥା ହାସ୍ୟକଲ୍ଲୋଳରେ ବହୁଳ ଭାବେ ବ୍ୟବହୃତ 'ଗଜଡ଼ା ବୋଲି' ସହ ଉତ୍କଳର ମହାତ୍ମାଙ୍କର ଅପରିଚିତ ହେତୁରୁ ଏବଂ ଉଭୟ ଆଦର୍ଶରେ ଅଶୁଦ୍ଧିର ଆତିଶଯ୍ୟ ହେତୁରୁ ତାହାଙ୍କ ପରିବେଷିତ ପାଠ ମଧ୍ୟ ସ୍ଥଳେ ସ୍ଥଳେ ସାର୍ଥକ ନୁହେଁ । ହାସ୍ୟକଲ୍ଲୋଳର ଏକ ସାର୍ଥକ ସଠିକ ସଂସ୍କରଣର ଆବଶ୍ୟକତା ଅନୁଭବ କରି ପ୍ରକାଶିତ ପାଠଗୁଡ଼ିକୁ ମିଳାଇ ମୁଁ ଏକ ପରିଶୋଧିତ ପାଠାନ୍ତର ପ୍ରସ୍ତୁତ କରୁଥିଲି । ସାଂପ୍ରତିକ ଯୁଗର ପ୍ରମୁଖ ହାସ୍ୟରସିକ ଶ୍ରୀ ଫତୁରାନନ୍ଦ ଏହା ଶୁଣି ତାହାକୁ ପ୍ରକାଶିତ କରାଇବା ପ୍ରସ୍ତାବ କଲେ ଏବଂ ତଦନୁଯାୟୀ 'ଡଗର'ର ଜାନୁଆରି ୧୯୭୨ ସଂଖ୍ୟାରେ ତାହା ପୂରା ପ୍ରକାଶ ପାଇଲା । ରସର ମର୍ଯ୍ୟାଦା ରସିକ ହିଁ ଜାଣେ ବୋଲି କବିମାନେ କେବଳ ରସିକ ପାଠକଙ୍କୁ ଲୋଡ଼ୁଥିଲେ:—

ଇତର ସନ୍ତାପ ନ ପଡ଼ୁ ଶତଶତ ।
ହିତର ମୋତେ ଯଥେଚ୍ଛା, ତା ମୋର ସମ୍ମତ ॥
ଅରସିକେ ପରଷିବା ରସ, ଚତୁର୍ମୁଖ ।
ମୋର ଶିରେ ତା ନଲେଖ ନଲେଖ ନଲେଖ ॥

(ସଂସ୍କୃତରୁ ଅନୂଦିତ)

ହାସ୍ୟକଲ୍ଲୋଳର ପ୍ରାର୍ଥିତ ରସିକ ଜୁଟିଲେ ଫତୁରାନନ୍ଦ । ସେ ପୁଣି ଚାହିଁଲେ ତାହାକୁ ସଂସ୍କୃତର ଟୀକାଟିପ୍ପଣୀ ଓ ମୁଖବନ୍ଧ ସହ ଏକ ପୁସ୍ତିକା ଆକାରରେ ବଜାରକୁ ଛାଡ଼ିବାକୁ । ଅନତି ବିଳମ୍ବେ ହାସ୍ୟକଲ୍ଲୋଳର ମୁଦ୍ରଣ ମଧ୍ୟ ସରିଲା, ଆଉ ଅଳ୍ପ କେତେ ପୃଷ୍ଠା ମୁଦ୍ରଣ ପରେ ତାହା ବଜାରକୁ ଯିବା କଥା । ଦୁର୍ଯୋଗକୁ ମୁଦ୍ରିତ

ପୃଷ୍ଠାଗୁଡ଼ିକୁ ଉଇ ଖାଇଗଲେ । ପୁସ୍ତିକା ଆକାରରେ ହାସ୍ୟକଲ୍ଲୋଳ ପ୍ରକାଶନ ପ୍ରସ୍ତାବ ଏତେକାଳର ସାଙ୍ଗ ହୋଇଥାନ୍ତା । କିନ୍ତୁ ସେହି ଫଲ୍ଗୁବାନନ୍ଦଙ୍କ ଉଦ୍ୟମରେ ହାସ୍ୟରସାତ୍ମକ ସାହିତ୍ୟ ଓ କଳାର ଅଭିବୃଦ୍ଧି ଲକ୍ଷ୍ୟରେଖି ଗଠିତ 'ସରସ ସାହିତ୍ୟ ସମିତି' ଏହାକୁ ସମିତିର ପ୍ରଥମ ପ୍ରକାଶନ ରୂପେ ଗ୍ରହଣ କରିବା ଲାଗି ତା୩୧-୮-୬୨ ସଭାରେ ସଂକଳ୍ପ କଲେ । ଫଲ୍ଗୁବାନନ୍ଦଙ୍କର ଏବଂ ସମିତିର ଅଲଙ୍ଘ୍ୟ ପ୍ରଚୋଦନାରେ ଉପର ପ୍ରକାଶିତ ପାଠରେ ଅଧିକ ଟୀକାଟିପ୍ପଣୀ ଯୋଗକଲି ଏବଂ ଏହି ଗ୍ରନ୍ଥପ୍ରବେଶଟିକୁ ଅଧିକା ଲେଖିଲି ।

ହାସ୍ୟକଲ୍ଲୋଳକୁ ତାଳପତ୍ର ପୋଥି ଆକାରରେ ଦେଖିବା ସୌଭାଗ୍ୟ ମୋର ହୋଇନାହିଁ । ଅନ୍ୟ କେହି ଆଲୋଚକ ମଧ୍ୟ ଏହାର ତାଳପତ୍ର ପୋଥି ଦେଖିଥିବା ପ୍ରକାଶ କରିନାହାନ୍ତି । ସମ୍ଭାବ-ମାପ୍ୟ ବହୁସ୍ଥାନରେ ଏହାର ସନ୍ଧାନ ନେଇଛୁ କିନ୍ତୁ ପାଇନାହିଁ । ଏବେ ପ୍ରାୟ ପଚାଶ ବର୍ଷହେଲା ତାଳପତ୍ର ପୋଥିର ନକଲ କାର୍ଯ୍ୟ ଆଉ ହେଉନାହିଁ । ତାହାର ପୂର୍ବବର୍ତ୍ତୀ ପଚାଶ ବର୍ଷ ମଧ୍ୟରେ ଅର୍ଥାତ୍ ବର୍ତ୍ତମାନଠାରୁ ଏକ ଶହରୁ ପଚାଶବର୍ଷ ମଧ୍ୟରେ ଏଣେ ତାଳପତ୍ର ପୋଥିର ନକଲକାର୍ଯ୍ୟ ହେଉଥାଏ ତ ତେଣେ ଗ୍ରନ୍ଥମାନ ମୁଦ୍ରିତ ହୋଇ ମଧ୍ୟ ପ୍ରକାଶିତ ହେଉଥାଏ । ଏକଶହ ବର୍ଷ ପୂର୍ବେ ମୁଦ୍ରଣର ପ୍ରସାର ନଥିବା ହେତୁରୁ ତାଳପତ୍ର ପୋଥିର ନକଲ ଦ୍ୱାରା ହିଁ ଗ୍ରନ୍ଥର ପ୍ରଚାର ସାଧିତ ହେଉଥିଲା । ମନେହୁଏ, ଗଦ୍ୟ ରଚନା ପ୍ରତି ଲୋକରେ ଆଦରର ଅଭାବ ହେତୁରୁ ହାସ୍ୟକଲ୍ଲୋଳର ଅଧିକ ସଂଖ୍ୟକ ନକଲ ପ୍ରସ୍ତୁତ ସମ୍ଭବ ହୋଇ ନଥିଲା ଏବଂ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଗଦ୍ୟ ରଚନାର ସମ୍ମାନ ବଢ଼ିବାରୁ ତାହା ବଳଦେବ

ରଥଙ୍କ ରଚନା ମଧ୍ୟରୁ ସର୍ବପ୍ରଥମେ ମୁଦ୍ରାଯନ୍ତ୍ର ଦେଖି ପାରିଲା । ତାଳପତ୍ର ପୋଥିର ଅନୁଲେଖକ ମାତ୍ରେ ପ୍ରାଚୀନପନ୍ଥୀ ହେବା ହେତୁ ସେମାନେ ଏହାର ନକଲ ପ୍ରତି ଆଗ୍ରହୀ ହୋଇ ନାହାନ୍ତି । ତେଣୁ ବର୍ତ୍ତମାନ ହାସ୍ୟକଲ୍ଲୋଳର ତାଳପତ୍ର ପୋଥି ଦେଖିବାକୁ ମିଳୁନାହିଁ । ଏହାର ଉଭୟ ସଂସ୍କରଣ ମଧ୍ୟରେ ପାଠର ତାରତମ୍ୟ ଦୃଷ୍ଟିରୁ ଦ୍ୱିତୀୟ ସଂସ୍କରଣଟିକୁ ପ୍ରଥମର ପୁନର୍ମୁଦ୍ରଣ ବୋଲି ନ କହି ଏକ ସ୍ୱତନ୍ତ୍ର ସଂସ୍କରଣ ବୋଲି କହିବା ଅଧିକ ଯୁକ୍ତିଯୁକ୍ତ ହେବ । ହାସ୍ୟକଲ୍ଲୋଳର ଏକ ପରିଶୁଦ୍ଧ ପାଠ ପ୍ରସ୍ତୁତି ପାଇଁ ମୋର ଯଥେଷ୍ଟ ପ୍ରୟାସ ସତ୍ତ୍ୱେ ଏଥିରେ ମଧ୍ୟ ପ୍ରମାଦର ଅବଶେଷ ତଥାପି ରହିଥିବା ସନ୍ଦେହ କରୁଛି, କିନ୍ତୁ ଏହାର କୌଣସି ତାଳପତ୍ର ପୋଥି ଅଭାବରେ ସନ୍ଦେହଜନକ ସ୍ଥାନଗୁଡ଼ିକୁ ବିଶୁଦ୍ଧକରି ହେଲାନାହିଁ । କେହି ରସିକ ପାଠକ ତାଳପତ୍ର ପୋଥିର ସନ୍ଧାନ ମୋତେ ଦେଲେ ପରବର୍ତ୍ତୀ ସଂସ୍କରଣ ବେଳକୁ ଏହି ପାଠକୁ ଅଧିକ ମାର୍ଜିତ କରି ପାରିବି ।

ଆହୁରି ମଧ୍ୟ, ଏହାର ସଂସ୍କୃତାଂଶରେ ପ୍ରଚୁର ପ୍ରମାଦ ରହିଥିବା ଅନୁଭବ କରିଥିଲେ ମଧ୍ୟ 'ଉଗର'ରେ ପ୍ରକାଶ କଲାବେଳେ ତାହାକୁ ପରିଶୁଦ୍ଧ କରିପାରି ନ ଥିଲି କାରଣ ସଂସ୍କୃତରେ ମୋର ତାଦୃଶ ଦକ୍ଷତା ନାହିଁ । ରାଜ୍ୟ ସାଂସ୍କୃତିକ ବିଭାଗର ପ୍ରକାଶନ ସଂପାଦକ ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ ଏ ଦିଗରେ ବିଶେଷ ଯତ୍ନନେଇ ସାହାଯ୍ୟକରି ନଥିଲେ, ସେହି ପ୍ରମାଦ ମାନ ଦୂରୀଭୂତ ହୋଇ ପାରି ନଥାନ୍ତା । ସେ ମହାଶୟ ସଂସ୍କୃତ ଶ୍ଳୋକଗୁଡ଼ିକୁ ପରିଶୁଦ୍ଧ କରାଇଲେ । ଶ୍ଳୋକେତର ସଂସ୍କୃତାଂଶରେ ଥିବା ପ୍ରମାଦ ଦୂର କରିବା ଲାଗି ଅନ୍ୟ ଏକ ନିର୍ଭରଯୋଗ୍ୟ ପାଠ ଆବଶ୍ୟକ ବୋଲି ବୋଧ ହେଉଅଛି ।

ବଳଦେବ ରଥଙ୍କ ଜନ୍ମ ଗଞ୍ଜାମର ଏକ ପ୍ରାଚୀନ ରାଜ୍ୟର ରାଜଧାନୀ ବିଜୟନଗରଠାରେ ଖ୍ରୀ: ୧୭୭୮ରୁ ୧୭୮୦ ମଧ୍ୟରେ । (ବଳଦେବଙ୍କ ଜନ୍ମ ଖ୍ରୀ. ୧୭୮୯ର ଶ୍ରୀ ପଞ୍ଚମୀ ତିଥିରେ ବୋଲି ସ୍ୱର୍ଗତ କୁଳମଣି ଦାଶ ନିରୂପଣ କରିଛନ୍ତି କିନ୍ତୁ ତାହାଙ୍କ ଗଣନା ଭ୍ରାନ୍ତ ବୋଲି ମୁଁ ଝଙ୍କାରର ୧୯୭୧ ଜୁନ୍ ସଂଖ୍ୟାରେ ପ୍ରକାଶିତ 'ବଳଦେବ ରଥଙ୍କ ଜନ୍ମକାଳ' ପ୍ରବନ୍ଧରେ ପ୍ରତିପାଦିତ କରିଅଛି ।) ତାହାଙ୍କ ପିତା ଉଜ୍ଜ୍ୱଳ ରଥ ମଧ୍ୟ ଜଣେ କବି ଓ ପଣ୍ଡିତ ଥିଲେ ଏବଂ ବିଜୟନଗରର ବିଦ୍ୟୋତ୍ସାହୀ ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ଉଦର-ପୋଷକତା ଲାଭ କରିଥିବା କଥା ଶୁଣାଯାଏ । ପୁରୁଷୋତ୍ତମଙ୍କ ମୃତ୍ୟୁ (ଖ୍ରୀ: ୧୭୭୬) ପରେ ରାଜକୀୟ ସାହାଯ୍ୟ ଦୁର୍ଲଭ ହେଲା ଏବଂ ଉଜ୍ଜ୍ୱଳ ରଥ କୁଟୁମ୍ବ ପରିପୋଷଣ ପାଇଁ ରୁଧାଂଳିଟିଏ କରି ଗୃହ-ଭିକ୍ଷାକୁ ଅନାଇଁ ରହିଲେ । ବଳଦେବ ଶୈଶବରେ ମାତୃହୀନ ହୋଇ ମାତାମହଙ୍କ ଗୃହକୁ (ଆଠଗଡ଼, ଗଞ୍ଜାମ) ଯାଇ କେତେ ବର୍ଷ ରହିଥିଲେ । ତାହାଙ୍କ ମାତାମହ ହିପୁରର ଓଡ଼ା ଜଣେ ତାନ୍ତ୍ରିକ ପଣ୍ଡିତ ଥିଲେ ଏବଂ ସେ ମହାଶୟ ବଳଦେବଙ୍କ ଶିକ୍ଷାର ଭାର ନେଇଥିଲେ । ଶିକ୍ଷା ସମାପ୍ତି ପରେ ବଳଦେବ ସ୍ୱଗୃହକୁ ଫେରି ବିବାହ କରିଥିଲେ ଏବଂ ବିବାହର ଅଳ୍ପକାଳ ପରେ ପିତାଙ୍କୁ ହରାଇଥିଲେ । ପିତାଙ୍କ ମୃତ୍ୟୁ ପରେ ବ୍ରହ୍ମାଳ ବୃତ୍ତି ଖଣ୍ଡିକ ମଧ୍ୟ ଗଲା । ଅନଟନର ପୀଡ଼ାରେ ବଳଦେବ ରଥ ଓ ତାହାଙ୍କ ଜ୍ୟେଷ୍ଠ ଭ୍ରାତା ଜନ୍ମମାଟି ଛାଡ଼ି ଜଳନ୍ତର ରାଜ୍ୟକୁ ଚାଲିଗଲେ (ପ୍ରାୟ ଖ୍ରୀ: ୧୭୯୮) । ଜଳନ୍ତରର ଯୁବକ ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟ ବଳଦେବ ରଥଙ୍କ କବିତ୍ୱ ଶକ୍ତିର ପରିଚୟ ପାଇ ତାହାଙ୍କୁ କବିସୂର୍ଯ୍ୟ ଉପାଧିରେ ମଣ୍ଡିତ କରି ସଭାକବି ପଦରେ ଅଧିଷ୍ଠିତ କରିଥିଲେ ଏବଂ ପରେ ରାଜ୍ୟର ସର୍ବୋଚ୍ଚ କର୍ମକର୍ତ୍ତା

ଦେୱାନ ଭାବେ ମଧ୍ୟ ନିଯୁକ୍ତ କରିଥିଲେ । ଜଳନ୍ତରରେ ପ୍ରାୟ ବାରବର୍ଷ କଟାଇବା ମଧ୍ୟରେ ବଳଦେବ ରଥ ପୂର୍ବରୁ ଅରାଜକତା ଭୋଗୁଥିବା ଜଳନ୍ତରକୁ ସୁଶାସନ ଦେଇଥିଲେ । ସାହିତ୍ୟସୃଷ୍ଟି ଦୃଷ୍ଟିରୁ ମଧ୍ୟ ତାହାଙ୍କର ଏହି ସମୟଟି ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ସମୟ ମଧ୍ୟରେ ସେ ପ୍ରାୟଶଃ ସ୍ୱୀୟ ଗୁଣଗ୍ରାହୀ ରାଜା ରାମଚନ୍ଦ୍ର ଛୋଟରାୟଙ୍କ ଭଣିତ ଦେଇ ଚନ୍ଦ୍ରକଳା ନାମକ ଏକ କାବ୍ୟ (ଯାହାକୁ କବି ପୂର୍ଣ୍ଣାଙ୍ଗ କରି ନଥିଲେ), କେତେକ ଛାନ୍ଦ ଓ ଅସଂଖ୍ୟ ଚଉପଦୀ ରଚନା କରିଥିଲେ । ଜଳନ୍ତରରୁ ସାହିତ୍ୟିକ ଓ ପ୍ରଶାସନିକ ସୁନାମ ନେଇ କବି ଗଲେ ଗଞ୍ଜାମର ଆଠଗଡ଼ ରାଜ୍ୟକୁ (ପ୍ରାୟ ଖ୍ରୀ. ୧୮୧୦ରେ) । ଆଠଗଡ଼ର ଯୁବକ ରାଜା ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦେବ ମଧ୍ୟ ତାହାଙ୍କୁ ସଭାକବି ଓ ଦେୱାନ କରିଥିଲେ ଓ 'କବିସୂର୍ଯ୍ୟ ରାୟଗୁରୁ' ଉପାଧି ଦେଇଥିଲେ । କବି ଆଠଗଡ଼ରେ ମଧ୍ୟ ପ୍ରାୟ ବାରବର୍ଷ କଟାଇଥିଲେ, ଯାହାକି ତାହାଙ୍କ ସାହିତ୍ୟିକ ଜୀବନର ଶ୍ରେଷ୍ଠ ସମୟ ଥିଲା । ଏହି ସମୟ ମଧ୍ୟରେ ସେ ତାହାଙ୍କର ଅନବଦ୍ୟ ସଙ୍ଗୀତାତ୍ମକ କୃତି 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଛଡ଼ା 'ଚଉପଦୀ ଚନ୍ଦ୍ରୋଦୟ', ଫୁଲ ମନାସ, ଫଳ ମନାସ ଓ ଅଳଙ୍କାର ମନାସ, ହାସ୍ୟକଲ୍ଲୋଳ, ଅନେକ ବ୍ରତ-ଗୀତ (ଅଦ୍ୟାବଧି ଅପ୍ରକାଶିତ), ବହୁ ଛାନ୍ଦ ଓ ଚଉତିଶା ଏବଂ ଅସଂଖ୍ୟ ଚଉପଦୀ ରଚନା କରି ସେ ଗୁଡ଼ିକୁ ପ୍ରାୟଶଃ ସ୍ୱ ପୃଷ୍ଠପୋଷକ ରାଜା ବାଲୁଙ୍କେଶ୍ୱରଙ୍କ ନାମରେ ଭଣିତ କରିଛନ୍ତି । ଆଠଗଡ଼ରେ ରହିବା ମଧ୍ୟରେ କବି କେତେ ମାସ ପୁରୀରେ କଟାଇବା ଅବସରରେ ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ (ଖ୍ରୀ ୧୭୯୮ – ୧୮୧୭)ଙ୍କ ଦ୍ୱାରା କବିସୂର୍ଯ୍ୟ ରାୟଗୁରୁ ମହାପାତ୍ର' ଉପାଧିରେ ଭୂଷିତ ହୋଇଥିଲେ (ତା ୨୭-୧୧-୧୮୧୫) । ସେ

ମୁକୁନ୍ଦଦେବଙ୍କ ଭଣିତି ଦେଇ ମଧ୍ୟ କେତେକ ଛାନ୍ଦ ଚଉପଦୀ ଲେଖିଛନ୍ତି । ଆଠଗଡ଼ ରହଣି ପରେ ବଳଦେବ ଇଂରାଜୀ କୋମ୍ପାନି ସରକାରଙ୍କ ଦ୍ୱାରା ମନ୍ଦୁର ରାଜ୍ୟର ମେନେଜର ଭାବେ ନିଯୁକ୍ତହୋଇ କେତେକ ବର୍ଷ ସେଠାରେ କଟାଇବା ପରେ, ସେହି କୋମ୍ପାନି ସରକାରଙ୍କ ଦ୍ୱାରା ପାରଳାଖେମୁଣ୍ଡିର ୧୬ ବର୍ଷ ବୟସ୍କ ସ୍ୱୈଣ ଦୁର୍ବଳଚିତ୍ତ ରାଜା ଜଗନ୍ନାଥ ଗଜପତି ନାରାୟଣ ଦେବଙ୍କ ଅଭିଭାବକ ରୂପେ ନିଯୁକ୍ତ ହୋଇ ପାରଳାଖେମୁଣ୍ଡିକୁ ଯାଇଥିଲେ (ପ୍ରାୟ ଖ୍ରୀ: ୧୮୩୦) । ଏହାର ତିନିବର୍ଷ ପରେ ରାଜନୈତିକ କାରଣରୁ ରସଲ୍ ସାହେବଙ୍କ ପ୍ରସ୍ତାବ କ୍ରମେ ବଳଦେବ ରଥଙ୍କୁ ଏହି ପଦରୁ ତଡ଼ି ଦିଆଗଲା (ଖ୍ରୀ. ୧୮୩୩ର ଏପ୍ରିଲ୍) । ଏହାପରେ ବଳଦେବ ପୁନରାୟ ଜଳନ୍ତରକୁ ଦେବାନ ଭାବେ ଯାଇଥିଲେ ଏବଂ ସେଠାରେ ରାଜପରିବାରର ଗୃହବିବାଦର ଶିକାର ହୋଇଥିଲେ ବୋଲି ଶୁଣିବାକୁ ମିଳେ । ପ୍ରଭୂତ ପ୍ରଭୁତା ଓ ଯଶ-ଗୌରବର ଅଧିକାରୀ ଏହି ସିଦ୍ଧହସ୍ତ କବିଙ୍କର ଶେଷ ଜୀବନ ଅଶାନ୍ତି ଓ ଅନାଦରର ସ୍ପର୍ଶ ପାଇ ପ୍ରାୟ ଖ୍ରୀ: ୧୮୪୦ ବେଳେ ଅବସିତ ହୋଇଗଲା । କବି ସ୍ୱୀୟ ପୃଷ୍ଠପୋଷକଙ୍କ ନାମରେ ଛାଡ଼ି ଯାଇଥିବା ପୂର୍ବୋଲ୍ଲିଖିତ ରଚନାମାନ ଛଡ଼ା ନିଜ ନାମରେ ମଧ୍ୟ 'ଚଉପଦୀ ରତ୍ନାକର' ଏବଂ ଅନେକ ଛାନ୍ଦ-ଚଉପଦୀ ଲେଖିଛନ୍ତି । କବିଙ୍କ ଜୀବନର କେତେକ ସମୟର ସୂଚନା ନିମ୍ନରେ ଦେଉଛୁ—

ଖ୍ରୀ. ୧୭୬୯ (ଆନୁମାନିକ)—ଜନ୍ମ, ଗଞ୍ଜାମର ବଡ଼ଗଡ଼ା ହେଣ୍ଡି ଗଡ଼ର ୬,୭ମାଇଲ ଦୂରବର୍ତ୍ତୀ ବିଜୟନଗର ଗଡ଼ଠାରେ ।

ଖ୍ରୀ. ୧୭୮୫ (ଆନୁମାନିକ)—ମାତୃବିୟୋଗ ।

ଖ୍ରୀ. ୧୭୮୭ (ଆନୁମାନିକ)—ମାତାମହଙ୍କ ଗୃହକୁ ଆଠଗଡ଼ (ଗଞ୍ଜାମ) ଯାତ୍ରା, ଏବଂ ସେଠାରେ ଆଠଗଡ଼ରେ ରହି ଶିକ୍ଷା ଲାଭ।

ଖ୍ରୀ. ୧୭୯୫ (ଆନୁମାନିକ)—ଜନ୍ମସ୍ଥାନ ବଜ୍ରପୁନଗରକୁ ପ୍ରତ୍ୟାବର୍ତ୍ତନ।

ଖ୍ରୀ. ୧୭୯୬ (ଆନୁମାନିକ)—ବିବାହ।

ଖ୍ରୀ. ୧୭୯୭ (ଆନୁମାନିକ)—ପିତୃବିୟୋଗ।

ଖ୍ରୀ. ୧୭୯୮ – ବଜ୍ରପୁନଗରରୁ ଜଳନ୍ତର (ଅଧୁନା ଆନ୍ଧ୍ର, ପ୍ରଦେଶ ଅନ୍ତର୍ଗତ) ରାଜ୍ୟକୁ ଯାତ୍ରା।

ଖ୍ରୀ. ୧୮୦୦ (ଆନୁମାନିକ) – କବିତା ରଚନା ଆରମ୍ଭ।

ଖ୍ରୀ. ୧୮୦୫ (ଆନୁମାନିକ)—କବିସୂର୍ଯ୍ୟ ଉପାଧି ଲାଭ।

ଖ୍ରୀ. ୧୮୦୮ (ଆନୁମାନିକ)—ଜଳନ୍ତରର ଦେୱାନ ଭାବରେ ନିଯୁକ୍ତ।

ଖ୍ରୀ. ୧୮୧୦ (ଆନୁମାନିକ) – ଜଳନ୍ତରରୁ ଆଠଗଡ଼କୁ ସ୍ଥାନାନ୍ତର, 'କବିସୂର୍ଯ୍ୟ ରାଜଗୁରୁ' ଉପାଧି ଲାଭ।

ଖ୍ରୀ. ୧୮୧୫ ନଭେମ୍ବର ୨୭—ପୁରୀଠାରେ ଖୋରଧା ରାଜା ମୁକୁନ୍ଦଦେବଙ୍କ ଠାରୁ 'କବିସୂର୍ଯ୍ୟ ରାଜଗୁରୁ ମହାପାତ୍ର' ଉପାଧି ଲାଭ।

ଖ୍ରୀ. ୧୮୨୨ (ଆନୁମାନିକ)—ମନ୍ଥର ରାଜ୍ୟର ମେନେଜର ଭାବେ ନିଯୁକ୍ତ ହୋଇ ଆଠଗଡ଼ ଛାଡ଼ି ବ୍ରହ୍ମପୁରରେ ଅବସ୍ଥାନ।

ଖ୍ରୀ. ୧୮୩୦——ପାରଳାଖେମୁଣ୍ଡିର ଆତ୍ତବାପ୍ପା ରାଜାଙ୍କ ଅଭିଭାବକ ଭାବେ ନିଯୁକ୍ତ ହୋଇ ପାରଳାରେ ଅବସ୍ଥାନ।

ଖ୍ରୀ. ୧୮୩୩ ଏପ୍ରିଲ୍—ଅଭିଭାବକ ପଦରୁ ଚ୍ୟୁତ।

ଖ୍ରୀ. ୧୮୪୦ (ଆନୁମାନିକ)—ମୃତ୍ୟୁ।

ସୂର୍ଯ୍ୟ କୁଳମଣି ଦାଶ କୌଣସି ଅପ୍ରକାଶିତ ସୂତ୍ରରୁ ବିବରଣୀ ସଂଗ୍ରହ କରି ହାସ୍ୟକଲ୍ଲୋଳର ରଚନା ନେଇ ଏକ ଅଜବ ଗଳ୍ପକୁ ବଳଦେବ ରଥଙ୍କ ଜୀବନ ବୃତ୍ତାନ୍ତରେ ସ୍ଥାନ ଦେଇଛନ୍ତି । ସେ ଲେଖିଛନ୍ତି ଯେ କବି ପାରଳାଖେମୁଣ୍ଡିରେ ଅବସ୍ଥାନ କରିବା ବେଳେ ତାହାଙ୍କ ପରମ ସୁହୃଦ୍ ଆଠଗଡ଼ ରାଜା ବାଲୁଙ୍କେଶ୍ୱର ଦୁରାରୋଗ୍ୟ ପୃଷ୍ଠବ୍ରଣାକ୍ରାନ୍ତ ହୋଇ କବିବନ୍ଧୁଙ୍କ ସହ ଅନ୍ତିମ ଭେଟ ପାଇଁ ବଳଦେବଙ୍କୁ ଆଠଗଡ଼କୁ ଡକାଇ ଆଣିଲେ । ବଳଦେବ ମୃତ୍ୟୁଶଯ୍ୟାଶାୟୀ ରାଜାଙ୍କୁ ଭେଟିଲେ ଏବଂ ଅସ୍ତ୍ରୋପଚାର ଦ୍ୱାରା ବ୍ରଣଟିକୁ ଫଟାଇ ଦେବାକୁ ପରାମର୍ଶ ଦେଲେ । ରାଜା କିନ୍ତୁ ଅସ୍ତ୍ରୋପଚାରର ତୀବ୍ର ଯନ୍ତ୍ରଣା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ବୋଲି ଅସ୍ତ୍ରପ୍ରୟୋଗକୁ ମନା କଲେ । ବଳଦେବ ପ୍ରିୟ ବନ୍ଧୁଙ୍କ ଜୀବନ ରକ୍ଷା ପାଇଁ ଉପାୟ ଚିନ୍ତା କରି କୌଶଳରେ ସେହି ପ୍ରବଳ ପୀଡ଼ାଦାୟକ ବ୍ରଣକୁ ଫଟାଇବା ଲକ୍ଷ୍ୟରେ 'ହାସ୍ୟକଲ୍ଲୋଳ' ରଚନା କରି ତାହାଙ୍କୁ ଶୁଣାଇଥିଲେ ଏବଂ ଏହାକୁ ଶୁଣି ରାଜା ବିହ୍ୱଳ ହୋଇ ହସିବାରୁ ସେତିକିବେଳେ ବ୍ରଣ ଫାଟିଗଲା ( କବିସୂର୍ଯ୍ୟ ଗ୍ରନ୍ଥାବଳୀ ପୃ ୭୩ ) । ଗଳ୍ପଟି ନିରୁତା କପୋଳ କଳ୍ପନା ପ୍ରସୂତ । କୌଣସି ଇତର ରାଜାଙ୍କର ଅନୁରୂପ ପୀଡ଼ାଦାୟକ ଗଣ୍ଡବ୍ରଣକୁ ଜଣେ ମୂର୍ଖ ବ୍ରାହ୍ମଣ ଆପଣା ମୂର୍ଖତା ପ୍ରଦର୍ଶନ ଦ୍ୱାରା ହସାଇ ଫଟାଇଥିବା ନେଇ ଏକ ଲୋକଗଳ୍ପ ଚଳୁଛି । କିନ୍ତୁ ତାହା ବଳଦେବ ରଥଙ୍କ କିମ୍ବା ଅନ୍ୟ କାହାରି ଜୀବନର ଘଟଣା ହେବା ସମ୍ଭବ ନୁହେଁ । ଜଣେ ମୃତ୍ୟୁ ମୁଖରେ ପଡ଼ିବା ଲୋକ କୌଣସି ଗଳ୍ପ ଶୁଣି ତାହାର ବ୍ରଣ ଫାଟିବା ପରି ହସିବା କଳ୍ପନା ଯେପରି ଅଳୀକ ତାହାକୁ ହସାଇବାକୁ ଚେଷ୍ଟା କରିବା ସେହିପରି ନିର୍ମମ ବୋକାମି । ରସୋଦ୍ରେକ ପାଇଁ ରସାନୁକୂଳ ପରିସ୍ଥିତି ଅପରିହାର୍ଯ୍ୟ । ବାଧ

ହାବୁଡ଼ରେ ପଡ଼ିଥିବା ଲୋକ କି ଶୃଙ୍ଗାର ଚିନ୍ତା କରିପାରେ ? ପୁଣି ହାସ୍ୟକଲ୍ଲୋଳର ହାସ ଅତି ମୃଦୁଳ, ବିଶେଷ ନମ୍ର; ତାହା କଦାପି ପ୍ରବଳ ଅଟ୍ଟହାସ ନୁହେଁ ଯେ ଘୃଣା ବିଘାଣ୍ଡି କରି ପାରିବ । ତାହା ଆଳଂକାରିକ ପରିଭାଷାରେ ସ୍ମିତ, ହସିତ ବା ଅତି ବେଶୀ ବିହସିତ ପର୍ଯ୍ୟାୟର ହୋଇପାରେ, କିନ୍ତୁ ସମଗ୍ର ଶରୀରକୁ ପ୍ରକମ୍ପିତ କରି ମାଂସପେଶୀଗୁଡ଼ିକୁ କଠିନ କରି ଯନ୍ତ୍ରଣା ଦେବା ଭଳି ହସ ( ଆଳଂକାରିକ ପରିଭାଷାର ଅତିହସିତ ) ତାହା ନୁହେଁ ।

ହାସ୍ୟକଲ୍ଲୋଳ ରଚନା ପାଇଁ ବିଶିଷ୍ଟତର କାରଣ ରହିଥିଲା । ତଦବଧି ଓଡ଼ିଆରେ ହାସ୍ୟରସାତ୍ମକ ରଚନାର ସଂଖ୍ୟା ଅତି କମ୍ । ସାରଳା ଦାସଙ୍କ ମହାଭାରତର କେତେକ ସ୍ଥଳ, ବଂଶୀ ଦାସଙ୍କ ଗଉଡ଼ୁ କଳସା ( ନାମାନ୍ତର କଳସା ଚଉତିଶା ), ନରସିଂହ ସେଣଙ୍କର 'ଗୋପକେଳି' କାବ୍ୟର ମଦନ ବେହା, କୃଷ୍ଣ ଦାସଙ୍କର 'ନାବକେଳି'ର ବୁଢ଼ୀନାଉରୀ, ବ୍ରଜନାଥ ବଡ଼ଜେନାଙ୍କର ଚତୁର ବିନୋଦ'ର ହାସବିନୋଦ ଭଳି ଅଳ୍ପ କେତୋଟି ରଚନାକୁ ଛାଡ଼ିଲେ ସମଗ୍ର ପ୍ରାଚୀନ ସାହିତ୍ୟରେ ହାସ୍ୟରସ ଆଉ କାହିଁ ? * ଉପେନ୍ଦ୍ର ଭଞ୍ଜ ରସପଞ୍ଚକରେ ନଅଟିଯାକ ରସର ପରିଚୟ ଦେବା ମଧ୍ୟରେ ହାସ୍ୟରସର ଯେଉଁ ଉଦାହରଣଟି ଦେଇଛନ୍ତି ତାହା ହାସ୍ୟରସର ଅଭାବକୁ ଆହୁରି ଉତ୍କଟ କରିଛି । ଉପେନ୍ଦ୍ର ହାସ୍ୟର ନମୁନା ଦେଲେ :—

---

* ହାସ୍ୟରସିକ 'ସରସ ସାହିତ୍ୟ ସମିତି' ପକ୍ଷରୁ ପ୍ରାଚୀନ ସାହିତ୍ୟର ହାସ୍ୟରସର ଏକ ସଂକଳନ ପ୍ରକାଶ କରାଯିବା ପ୍ରସ୍ତାବ ରହିଛି ।

"ରୋଷେ ନାସିକା-ଶ୍ରବଣ, ଛେଦନ୍ତେ ଲକ୍ଷ୍ମଣ,
ସୂର୍ପଣଖାର ମୁଖକୁ ଚୁମ୍ବି ।
ରସାନନ୍ଦନୀ ସ୍ୱକରେ କର ମାରି ଖରେ,
ଉଚ୍ଚହାସେ ମତ୍ତ ହେଲେ ତନ୍ୱୀ ।"

ଲକ୍ଷ୍ମଣ ସୂର୍ପଣଖାର ନାକକାନ କାଟି ଦିଅନ୍ତେ ତାହାର ମୁଖଟି କ୍ଷତବିକ୍ଷତ ହୋଇ କଦାକାର ହେବାରୁ ସୀତା ଉତ୍‌ଫୁଲ୍ଲ ହୋଇ ତାଳିମାରି ଉଚ୍ଚହାସ କଲେ ! କି ନିର୍ମମ ଏ ହସ ! ଜଣେ ମରଣାନ୍ତକ ଯାତନା ଭୋଗ କରିବା ଦେଖି ଅନ୍ୟଜଣେ, ସେ ପୁଣି ଜଣେ ଆଦର୍ଶସ୍ତ୍ରୀ ମାସ୍ୱୀ ଭାରତୀୟ ନାରୀ, ଉଚ୍ଚହାସ କରିପାରେ ଏ କଳ୍ପନା ଆଜି ଆମକୁ ଅଡୁଆ ଅଡୁଆ ଲାଗୁଛି । କିନ୍ତୁ ଏହା ସ୍ୱୀକାର୍ଯ୍ୟ ଯେ ଅପରର ଯନ୍ତ୍ରଣା କେତେକଙ୍କୁ ହସାଉ ଥିଲା । ରାସ୍ତାରେ ସାଇକଲ୍ ଶିଖିଲା ପିଲାଟିଏ ଦୁର୍ଘଟନାରେ ପଡ଼ି କ୍ଷତାକ୍ତ ହେଲାବେଳେ ଅନ୍ୟ ପିଲେ ଏବେବି ହସୁଛନ୍ତି, ରାଜାମାନେ ତ ଆନନ୍ଦ କରୁଥିଲେ ଅପରର ନିର୍ଯାତନାକୁ ହିଁ ବୁଝୁଥିଲେ । କିନ୍ତୁ ସାହିତ୍ୟ ବିଚାରର ତାହା କଳୁଷିତ ହାସ୍ୟରସ । ସେହିପରି କଳୁଷିତ ହାସ୍ୟ ହେଲା ଅଶ୍ଳୀଳ ଗଳ୍ପ । ଯଦିବା ତାହା ଅନେକଙ୍କୁ ବେଶ୍ ମଜାଏ । ଓଡ଼ିଆ ଲୋକମୁଖରେ ବହୁ ସଂଖ୍ୟକ ଭଣ୍ଡ-ଗଳ୍ପ ( ଏବଂ କେତେ ଭଣ୍ଡ କବିତା ମଧ୍ୟ )ଚଳୁଛି, କିନ୍ତୁ ସେ ସବୁ ସାହିତ୍ୟ ନୁହେଁ । ବଳଦେବ ରଥଙ୍କ ପ୍ରୟୋଗଧର୍ମୀ ଲେଖନୀ ଏ ସବୁରୁ ଦୂରରେ ରହି ପ୍ରସନ୍ନ ହାସ୍ୟରସ ପରିବେଷଣ ପାଇଁ ହାସ୍ୟକଲ୍ଲୋଳର ପରିକଳ୍ପନା କରିଥିବା ଅନୁମେୟ । ରାଜାଙ୍କ ଚିକିତ୍ସା ଅପେକ୍ଷା ସାହିତ୍ୟର ସମୃଦ୍ଧି ହିଁ ଯେ ତାହାଙ୍କର ଅଧିକ ଧ୍ୟେୟ ଥିଲା, ଏତିକି ସ୍ୱୀକାର କରିଯାଉ ।

ହାସ୍ୟ ରସର ଉତ୍ସରୂପେ ଅସ୍ୱାଭାବିକତାକୁ ନିର୍ଦ୍ଦିଷ୍ଟ କରି ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ଲେଖିଛନ୍ତି :—'ବିକୃତା-କାର ବାଗ୍‌ବେଶ ଚେଷ୍ଟାଦେଃ କୁତୁକାଦ୍ ଭବେତ୍' । ଏ ତତ୍ତ୍ୱରୁ ଆକୃତି ଓ ବେଶଭୂଷାର ବିକୃତି ଦ୍ୱାରା ଉତ୍ପନ୍ନ ହାସ୍ୟ ଶୁଦ୍ଧ ସାହିତ୍ୟର ପରିସରଭୁକ୍ତ ନୁହେଁ, ତାହା ମୋଟାମୋଟି ଭାବେ ବିଦୂଷକ ଭଣ୍ଡ ( Clown, Buffoon ) ଆଦିଙ୍କ କାମ । ଅଷ୍ଟାଦଶ ଶତାବ୍ଦୀର ଅନ୍ୟତମ ସିଦ୍ଧହସ୍ତ ସାହିତ୍ୟସ୍ରଷ୍ଟା ବ୍ରଜନାଥ ବଡ଼ଜେନା ହାସବିନୋଦ ମଧ୍ୟରେ ବିଦୂଷକମାନଙ୍କୁ ହାସ୍ୟରସ ସୃଷ୍ଟିରେ ପ୍ରାଧାନ୍ୟ ଦେବା ଫଳରେ କିପରି କଳାତ୍ମକ ଅବକ୍ଷୟ ହୋଇଛି ତାହା ପାଠକେ ସହଜେ ଅବଧାରଣ କରି ପାରିବେ । ବ୍ରଜନାଥଙ୍କ ଜଣେ ରସିକ ପାଠକ ଏବଂ ଗୁଣଗ୍ରାହୀ ସମାଲୋଚକ ଶ୍ରୀ ସୁଧାକର ପଟ୍ଟନାୟକ 'ହାସ ବିନୋଦ' ନେଇ ଯେଉଁମତ ଦେଇଛନ୍ତି ତାହା ମୁଖ୍ୟତଃ ବିକୃତାକାର ଓ ବିକୃତବେଶକୁ ଆକ୍ଷେପ କରୁଛି । ଶ୍ରୀ ପଟ୍ଟନାୟକ ଲେଖିଛନ୍ତି "ହାସ ବିନୋଦ—ବାସ୍ତବିକ କଥାବସ୍ତୁର ବୈଚିତ୍ର୍ୟ କିଛି ନାହିଁ । ଗୁଡ଼ିଏ ଅସ୍ୱାଭାବିକ କଥା ଦ୍ୱାରା ଲେଖକ ପାଠକ ମାନଙ୍କ ମନରେ ହାସ୍ୟରସର ଉଦ୍ରେକ କରାଇବାକୁ ଚେଷ୍ଟା କରିଅଛନ୍ତି । ବର୍ଣ୍ଣନାର ଅପ୍ରାକୃତିକତା ସ୍ଥାନେ ସ୍ଥାନେ ଶ୍ଳୀଳତାର ସୀମା ଲଙ୍ଘନ କରିଛି" ଏବଂ ଅନ୍ୟତ୍ର ଏକ ବିକୃତାକାର ବର୍ଣ୍ଣନା ସମ୍ପର୍କରେ, "ଏହା ପିତୃଣ ଜନ ସୁଲଭ ବ୍ୟାପାର । ଏହାଦ୍ୱାରା ଜୁଗୁପ୍‌ସା ଜାତ ହେବାର କଥା କିନ୍ତୁ ହାସ୍ୟ ରସରେ ଏହା ସମର୍ଥିତ ହୋଇ ପାରେ", ପ୍ରକୃତ ପକ୍ଷେ ଜୁଗୁପ୍‌ସା ବୀଭତ୍ସର ଲକ୍ଷଣ, ହାସ୍ୟର ନୁହେଁ । ହାସ୍ୟକଲ୍ଲୋଳରେ ବଳଦେବ ରଥ ବିକୃତାକାର ଓ ବିକୃତ ବେଶକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିଥିବା ଏବଂ ବିକୃତ ବଚନ ଓ ବିକୃତ ଚେଷ୍ଟାକୁ ପ୍ରାଧାନ୍ୟ ଦେଇଥିବା ତାହାଙ୍କର ବିଦଗ୍ଧ

ରସିକ ତାର ପରିଗୃପ୍ତକ । ବିକୃତ ବଚନର ଉଦାହରଣ ରୂପେ ପାଞ୍ଚ ତିନିକି ପଞ୍ଚାଶୋଇ, ସାତଶଉଣା ଅଠେଇଶହ, ସୂର୍ଯ୍ୟମଠରେ ଶୁକ୍ରବାର ଦିନ କିନ୍ତୁ ବୈଷ୍ଣବ ମତରେ ରବିବାରଦିନ ନିଶାମଙ୍ଗଳ-ବାର ପାଳନ, ପୁରୋହିତଙ୍କ ଆଶୀର୍ବାଦ ଶ୍ଳୋକ, ଜ୍ୟୋତିଷଙ୍କର ମଙ୍ଗଳବଚନ, ପୁରାଣ ପଣ୍ଡାଙ୍କର ପୁରାଣ, ଜାଲମାନଙ୍କ କଥାବାର୍ତ୍ତା ଆଦି ଶହ ଶହ କଥା ହାସ୍ୟକଲ୍ଲୋଳରୁ ଦିଆଯାଇ ପାରେ । ବିକୃତ ଚେଷ୍ଟାର ଉଦାହରଣ ରୂପେ ସାବଲା ଶୁଖୁଆ ଜୋରିମାନା, ଉପହାର ସ୍ୱରୂପ ସୁନିଆ ଲଡ୍ଡୁ, କନ୍ୟାର ଭାଇ ନଥିଲେ ମାମୁଁ ଭୋଗ କରିବା (ଦକ୍ଷିଣର ମାମୁଁକୁ ବିବାହ କରିବା ପ୍ରଥାପ୍ରତି ଉପହାସ), ସର୍ଦ୍ଦାର ମାନଙ୍କ ବୀରତ୍ୱ, ମାଗଧମାନଙ୍କ ସହ ଧୂଳିସୁପାତିରେ ପହୁଡ଼ି ଛୁଚୁନ୍ଦ୍ରା । ମାଂସ ପଲଉକୁ ପେରୁପକ୍ଷୀ ଝୋଲ, ଦନ୍ତଧାବନ ସୁଟକେଇ ଏକାବେଳକେ ସମ୍ପାଦନ, ଗୋଡଯୋଡ଼ି ନମସ୍କାର, ନମ୍ବରଟ ଚୋଠମାଳ ଭଗ୍ନ ଦେବାଳୟରେ ବିବାହ, ପୁରୋହିତଙ୍କ ମାଛବୃଷ, ବସିକରି ପ୍ରସାକରି ପାଣି ଘେନିବା ଲାଗି ଜୋରିମାନା ବିଧାନ, ଲଙ୍କାମରିଚ ବାଗରେ ସଙ୍ଗୀତ ଗାନ ଆଦି ବହୁକଥା ଦିଆଯାଇପାରେ । ହାସ୍ୟକଲ୍ଲୋଳର ଚରିତ୍ର-ନାମକରଣରେ ମଧ୍ୟ ହାସ୍ୟୋଦ୍ରେକ ସଙ୍କେତ ମିଳେ *

---

* ରାଜାର ନାମ ରହସ୍ୟଘୋଷ ଅର୍ଥାତ୍ ଅଠାର ଗଉଡ଼ପଲ୍ଲୀ । ରାଜାଙ୍କ ନାମ ଉଲ୍ଲତକର୍ଣ୍ଣ । ସର୍ଦ୍ଦାରମାନଙ୍କ ନାମ କାଞ୍ଜି ବୈରିଗଞ୍ଜନ, ଚୋଡ଼ି ଖରେଇମଲ, କୁଣ୍ଡା ଢିପ ଶଲ ଆଦି । ବେଶ୍ୟାଙ୍କ ନାମ ଲେଭଡ଼ୀ ଲୀଳାବତୀ, ଥୋବଡ଼ୀ ଜଗନ୍ମୋହିନୀ ଆଦି । ପୁରୋହିତ ଅକଲ୍ୟାଣ ମହାପାତ୍ର, ଗଣକ ପ୍ରତିକୂଳ ଜ୍ୟୋତିଷରତ୍ନ, ପୁରାଣପଣ୍ଡା ନିରକ୍ଷର ବାଚସ୍ପତି, ଦେବାନ ଧୁରନ୍ଧର ବେହିଆ ମହାପାତ୍ର, ଚିକିତ୍ସକ ପ୍ରାଣାନ୍ତକ ବୈଦ୍ୟଚନ୍ଦ୍ର, ସଙ୍ଗୀତଜ୍ଞ ସ୍ୱଷ୍ଟବୈତ୍ୟ ଚାପଳ ନନ୍ଦନଙ୍କ ରାଉଳ, ଏବଂ କବି ବର୍ଣ୍ଣବୈରି କପିରାଜ ଆଦି ।

ଏହିପ୍ରକାରେ ସମଗ୍ର ରଚନାଟିରେ ଯୋଜନା ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ଜଣାପଡ଼େ ଯେ, ବଳଦେବ ରଥ ଶାଳୀନ ହାସ୍ୟରସ ଗର୍ଭକ ଏକ ରଚନା ସୃଷ୍ଟି କରିବାକୁ ବିଶେଷ ଧ୍ୟାନ ଦେଇଥିଲେ ।

ଓଡ଼ିଆରେ ଉପହାସ (Satire) ରଚନା ପ୍ରତି ମଧ୍ୟ ବଳଦେବ ରଥ ଦୃଷ୍ଟି ଦେଇଥିଲେ । ତାହାଙ୍କର 'ଜଗତେ କେବଳ', 'କାହାକୁ ଅଡ଼ିବା, କପାଳରେ ସିନା କର ତାଡ଼ିବା', 'ହେ ସରିସେ, କୁହା ଯାଉଥାଏ ସିନା' ଆଦି ଉପହାସାତ୍ମକ ରଚନାର ସ୍ୱର ପୂର୍ବରୁ ଓଡ଼ିଆରେ ନଥିଲା । ହାସ୍ୟକଲ୍ଲୋଳରେ ହାସ୍ୟର ପ୍ରାଧାନ୍ୟ ଉପହାସକୁ ଅଚ୍ଛନ୍ନ କରି ରଖିଥିଲେ ହେଁ ଏଥିରେ ଗୋଟିଏ ଉପହାସନିପୁଣ ଲେଖନୀର ସଫଳତା ବାରିହୁଏ । ବଳଦେବ ରଥ ଏହାର ନାୟକ ରାଜାଙ୍କୁ କରିଛନ୍ତି ମୂର୍ଖ ଓ କାଲ, ଲୋକଙ୍କ ଗୁହାରି ଶୁଣିବାକୁ କାନ ନାହିଁ, ବୁଝିବାକୁ ଜ୍ଞାନ ନାହିଁ । ତାହାଙ୍କ ପାରିଷଦ-ବର୍ଗ, ସେବକ, ଭଲଲୋକ ଆଦି ମଧ୍ୟ ଅନୁରୂପ ଅଯୋଗ୍ୟ ଓ କାଲ । ଶାସକ ମୂର୍ଖ ବଧିର ହେଲେ ପ୍ରଜାଙ୍କ ଦୁଃଖ ଶୁଣିବ କିଏ, ଜାଣିବ କିଏ ? କବିଙ୍କ ଚିତ୍ତବୃତ୍ତିରେ ସମଗ୍ର ରାଜୁତା ବ୍ୟବସ୍ଥା ପ୍ରତି ଉପହାସର ଧାରା ଏଥିରେ ଅନ୍ତଃସଲିଳା ରୂପେ ବରାବର ଲକ୍ଷ୍ୟ କରାଯାଇ ପାରେ ।

ରଚନାଟି ଆରମ୍ଭ ହୋଇଛି ଗଳ୍ପସାଗର ବା କଥାସମୁଦ୍ରମାନଙ୍କ ଅନୁସୃତ ଶୈଳୀରେ (ଏହି ଶୈଳୀକୁ ଓଡ଼ିଶାର ସର୍ବଜନ ପରିଚିତ ହାସ୍ୟ ପରିବେଷକ ଶ୍ରୀ ବାଞ୍ଛାନିଧି ଶତପଥୀ ଏବେ ବି ଉଜ୍ଜୀବିତ ରଖିଛନ୍ତି) । ଏଥିରେ ଉପର୍ଯ୍ୟୁପରି ଅନେକ ପଦର ଉଚ୍ଚାରଣ ଓ ଗଠନ ସମାନ ଥାଏ । ବଳଦେବ ରଥ ହାସ୍ୟକଲ୍ଲୋଳକୁ ଶୁଦ୍ଧ ଗଦ୍ୟରେ ଆରମ୍ଭ ନ କରି ଏପରି ପଦ୍ୟାପ୍ଲୁତ ଗଦ୍ୟରେ ଲେଖିବାର

କାରଣ ଏହି ଯେ, ଏହି ରଚନାଟି ଓଡ଼ିଶାର ପ୍ରତି ଗଡ଼ଜାତରେ ରହିଥିବା ଗଲ୍ପସାଗର, କଥା ସାଗର, କଥାସମୁଦ୍ର * ଆଦି ଉପାଧିଧାରୀ ହାସ୍ୟକାରୀମାନଙ୍କ ଦ୍ୱାରା ପ୍ରସ୍ତୁତ ହେବା ଲାଗି ଉଦ୍ଦିଷ୍ଟ ଥିଲା। ମୁଦ୍ରାଯନ୍ତ୍ରର ପ୍ରବର୍ତ୍ତନ ପୂର୍ବ କାଳରେ ମଧ୍ୟ ସାହିତ୍ୟିକର ଦାୟିତ୍ୱ ସାହିତ୍ୟସୃଷ୍ଟିରେ ସରିଯାଉ ନଥିଲା, କିଏ ତାହାକୁ ପ୍ରଚାର କରିବ, ଲୋକରେ ବଞ୍ଚାଇ ରଖିବ, ସେଥିପ୍ରତି ତାକୁ ଦୃଷ୍ଟି ଦେବାକୁ ହେଉଥିଲା ।

ହାସ୍ୟକଲ୍ଲୋଳରେ ବ୍ୟବହୃତ ଭାଷାର ମଧ୍ୟ ଏକ ବିଶେଷତା ରହିଛି, ତାହା ହେଲା ରାଜୁତ୍ତା ଏବଂ ଯାବନିକ ଶବ୍ଦାବଳୀର ପ୍ରାଚୁର୍ଯ୍ୟ। ଓଡ଼ିଶାରେ ପାର୍ଶି ଭାଷା ରାଜକୀୟ ଭାଷା ରୂପେ ଷୋଡ଼ଶ ଶତାବ୍ଦୀର ଶେଷଭାଗରୁ ଚଳୁଥିଲା ଏବଂ ଇଂରାଜୀ କମ୍ପାନୀ ସରକାର ମଧ୍ୟ ତାହାକୁ ମାନି ନେଇଥିଲେ। ବଳଦେବ ରଥ ଯାବନିକ ଶବ୍ଦାବଳୀକୁ ଓଡ଼ିଆରେ ଚଳାଇ ନେବାର ପକ୍ଷପାତୀ ଥିଲେ, ଏ କଥା କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଓ ଅନ୍ୟାନ୍ୟ ଚଉପଦୀରୁ ବାରି ହୁଏ। ହାସ୍ୟକଲ୍ଲୋଳରେ ବ୍ୟବହୃତ କିଷ୍ଟିଆଳ, ଖରଚ, ଖାମିନ୍ଦ, ଖୁବ୍, ଖୈପଦାର, ଜରିମାନା, ଜଲ୍‌ଦି, ଜିନସ, ତାଲୁକା, ତ୍ତୁକୁମ୍‌, ଦରବାର, ଦାନା, ଦିବାନ, ଦୋକାନ, ନଜର, ପଟୁଆର, ପଠାଣ, ଫଜିତ, ଫରମାସି, ଫିରାଦ, ବରଖାସ୍ତ, ମକୁବ, ମାରଫତ, ମୁଲକ, ମୁଲାକାତ, ରୋଜ, ଶାଲ,

* ଅନେକ ସ୍ଥଳେ ବିଦୂଷକ ଓ ଭଣ୍ଡମାନେ ଗଲ୍ପସାଗର ଆଦି ଉପାଧି ପାଉଥିଲେ ହେଁ ବିଦୂଷକ ଓ ଭଣ୍ଡମାନଙ୍କ ପ୍ରଧାନ ଗୁଣ ଥିଲା ବିକୃତ ବେଶ ଅଙ୍ଗଭଙ୍ଗୀ ଓ ଅଶ୍ଳୀଳ ଅଭିନୟ ଦ୍ୱାରା ହସାଇବା ଅଥଚ ଗଲ୍ପସାଗରର ହସାଇବା ଶୈଳୀ ପୁରାପୁରି ସାହିତ୍ୟିକ ଥିଲା। ଅନେକ ରାଜଦରବାରରେ ଗଲ୍ପସାଗର ଓ ବିଦୂଷକ ଭିନ୍ନ ଭିନ୍ନ ବ୍ୟକ୍ତି ହେଉଥିଲେ।

ସରକାର, ସିତାର, ହଜାର, ହାଜର, ହୁକୁମ, ହେଙ୍ଗମା ଆଦି ଯାବନିକ ଶବ୍ଦାବଳୀ ମଧ୍ୟରୁ ଅଧିକାଂଶ ବର୍ତ୍ତମାନ ଓଡ଼ିଆ ସାହିତ୍ୟିକ ଭାଷାରେ ମିଶିଗଲେଣି, କିନ୍ତୁ ବଳଦେବ ରଥଙ୍କ ବେଳକୁ ସେଗୁଡ଼ିକ ଏପରି ମାନ୍ୟତା ପାଉ ନଥିଲେ । ଏ ଦିଗରେ ବଳଦେବ ପଥ-ପ୍ରଦର୍ଶକ ରୂପେ କାର୍ଯ୍ୟ କରି ଓଡ଼ିଆକୁ ପୁଷ୍ଟ କରିଛନ୍ତି, ଏହା ନିଃସନ୍ଦେହ । ରାଜ ଦରବାରରେ ବିଶେଷତଃ ଯାବନିକ ଶବ୍ଦାବଳୀର ପ୍ରୟୋଗ ଥିବା ପରି ଏକ ସ୍ୱତନ୍ତ୍ର ବୋଲିର ପ୍ରୟୋଗ ଥିଲି ଯାହାକୁ ରାଜୁଡ଼ା ବୋଲି ବୋଲି ଯାଇପାରେ । ଇତରମାନଙ୍କ ପାଇଁ ଯେଉଁ ଶବ୍ଦ ଚଳେ ତାହା ରାଜାଙ୍କ ପାଇଁ ଚଳିଲେ ରାଜାଙ୍କ ବୈଶିଷ୍ଟ୍ୟ ରହିବ କିପରି । ତେଣୁ ରାଜାଙ୍କ ଦେହଟି ଶ୍ରୀଅଙ୍ଗ (ସେହିପରି ଶ୍ରୀମୁଖ, ଶ୍ରୀହସ୍ତ ଆଦି), ଶୋଇବାଟି ପହୁଡ଼, ଖାଇବାଟି ମଣୋହି, ହଗିଯିବାଟି ଶୁଳେଇକି ବିଜେ ହେବା, ଷିଅର ହେବାଟି ପନିଅର ଲାଗି, ବେଶ ହେବାଟି ସିଂଗାର, ଗାଧୋଇବାଟି ମାଜଣା, ମୁହଁ ଧୋଇବାଟି ଶ୍ରୀମୁଖ ପଖାଳ, ଏହିପରି ଏହିପରି ବିବିଧ ପ୍ରତିଶବ୍ଦ ରହିଛି । ମହାରାଜାଙ୍କ ପୁଅ ଜେନାମଣି, ଝିଅ ଜେମାମଣି, ବାପା ବଡ଼ଦେଉ, ମାତା, ମା ଗୋସେଇଁ, ପତ୍ନୀ-ମହାଦେଈ ଏହିପରି ସମ୍ପର୍କିତମାନେ ମଧ୍ୟ ସ୍ୱତନ୍ତ୍ର ଆଖ୍ୟାର ଅଧିକାରୀ । ମହାରାଜା ଶୁଣନ୍ତି ନାହିଁ, ବିଦ୍ୟ ଅବଧାନକୁ ନିଅନ୍ତି; ପଚାରନ୍ତି ନାହିଁ, ପଚାର-ଆଜ୍ଞା ହୁଅନ୍ତି; କରନ୍ତି ନାହିଁ, କରି ଆଜ୍ଞା ହୁଅନ୍ତି; ଦିଅନ୍ତି ନାହିଁ, ଦେଇଁ-ଆଜ୍ଞା କରନ୍ତି ଏପରି ଏପରି ବହୁ ସ୍ୱତନ୍ତ୍ରତାକୁ ନେଇ ରାଜୁଡ଼ା ବୋଲି ଚଳୁଥିଲି । ହାସ୍ୟକଲ୍ଲୋଳରେ ଏହି ବୋଲିର ସମଧିକ ପ୍ରୟୋଗ ଲକ୍ଷ୍ୟ କରାଯାଇ ପାରେ ।

ହାସ୍ୟକଲ୍ଲୋଳର ଏହି ପାଠ ପ୍ରସ୍ତୁତ କଲାବେଳେ ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା ମୋତେ ତାହାଙ୍କ ବ୍ୟକ୍ତିଗତ ଗ୍ରନ୍ଥାଗାରର

ମୂଦ୍ରିତ ହାସ୍ୟକଲ୍ଲୋଳର ନକଲ ଯୋଗାଇଛନ୍ତି । ପୂର୍ବରୁ ଉଲ୍ଲେଖ କରିଛି ଯେ, ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହାର ସଂସ୍କୃତ ଶ୍ଳୋକଗୁଡ଼ିକ ପରିଶୁଦ୍ଧ ହୋଇ ପାରିଲା । ଏହି ପ୍ରକାଶନର କର୍ଣ୍ଣଧାର ଯେ ଫକୀରାନନ୍ଦ ତାହାଙ୍କର ଘନଘନ ପ୍ରରୋଚନା ବିନା ମୁଁ ଏହି କାର୍ଯ୍ୟ ହାତେଇ କରି ନଥାନ୍ତି । ସେହିମାନଙ୍କର ମହନୀୟତାର ଫଳ ଏହି 'ହାସ୍ୟକଲ୍ଲୋଳ'ର ସମ୍ପାଦନ, ତେଣୁ ସମ୍ପାଦକ ଭାବେ କୃତଜ୍ଞ ରହୁଛି, ରହିବି ।

ଟାଇପ୍ ୪ ଆର୍—୨୨୯ }
ୟୁନିଟ୍-୭, ଭୁବନେଶ୍ୱର } ସଚ୍ଚିଦାନନ୍ଦ ମିଶ୍ର

# ହାସ୍ୟକଲ୍ଲୋଳ

ଭୂୟୋ ନମଃ କୌତୁକଲମ୍ପଟାୟ ଘନଭ୍ରୂବାରମ୍ୟତଟୀନଟାୟ
ଘଟସ୍ତମାନାଂ ପଟଲୀବଟାୟ କୃଷ୍ଣାୟ ବଦ୍ୟୁଦ୍‌ବଲସତ୍‌ପଟାୟ ॥
ମନ୍ଦାର ବୃନ୍ଦାରକବନ୍ଦିତାଂଘ୍ରିଂ ନନ୍ଦାଳୟେନ୍ଦ୍ରୋପୃଳମାଳ ଲକ୍ଷ୍ମୀମ୍
ବୃନ୍ଦାବନବ୍ୟୋମଶଦାରଚନ୍ଦ୍ରଂ କୁନ୍ଦାବଦାତାସିତମୀଶମୀଡ଼େ ॥

ଏ ହେଲ ହୋ, ସେ ହେଲ ହୋ ୧, ଏକ ଯେ ମହାରାଜ୍ୟ ଥିଲ ।

ସେ ରାଜ୍ୟର ନାମ ରହସ୍ୟ ଘୋଷ ୨ । ଦେଶ ୩ ପାଞ୍ଚଶ ଊଣା ପଞ୍ଚାଶ କୋଶ ॥ ଅଷ୍ଟ ଗୁଣବନ୍ତ ସମସ୍ତ ଦୋଷ ୪ ॥ ଗୁଣଙ୍କ ଦେଖିଲେ ହୁଅନ୍ତ ରୋଷ ॥ ଗୋସାଇଁମାନଙ୍କ ୫ ବେଷାୟୁ ଘୋଷ ୬ ॥ ଟଣା ଶୁବାଇଲେ ନବରତ୍ନେ ୭ ଶୋଷ ॥ ସାଧୁଙ୍କୁ ନନ୍ଦଲେ ମନରେ ତୋଷ ॥

ଘୁଷୁରି ଦେଖିଲେ ବୋଲନ୍ତି ହାସ୍ତି । ଜାଣି ନ ପାରନ୍ତି କେ କେଉଁ ଜାତି ॥ ବ୍ରାହ୍ମଣମାନଙ୍କ ହାତରେ କାତି ॥ ଭକ୍ତିରେ ଗୁରୁ-ବୈଷ୍ଣବ-ଘାତି ॥ କଉଡ଼ିମାଳିଆ ୮ ସବୁଙ୍କ ଛାତି ॥ ହାଣ୍ଡି ନ

---

୧. ଏ ହେଲ ହୋ, ସେ ହେଲ ହୋ—ଗଳ୍ପ ସାରର ଗଳ୍ପ ଆରମ୍ଭ କରିବା ବେଳର ନିରର୍ଥକ ଲୟ । ୨. ଘୋଷ—ଗଉଡ଼ପଲ୍ଲୀ । ୩. ଦେଶ—ଭୂମିର ବିସ୍ତାର । ୪. ଅଷ୍ଟ…… ଦୋଷ—ଏଠାରେ ସବୁ ଦୋଷ ସ୍ଥଳକୁ ଗୁଣବୋଲି ବର୍ଣ୍ଣନ କରାଯାଏ । ୫. ଗୋସାଇଁ—ବ୍ରାହ୍ମଣ । ୬. ବେଷାୟୁ ଘୋଷ—ରାନ୍ଧୁଣିଆ ଗଉଡ଼ ଅଟେ । ୭. ନବରତ୍ନେ—ନବାବ୍ଧିତ ହୁଏ । ୮. କଉଡ଼ି ମାଳିଆ—ମୂଲ୍ୟବାନ ଅଳଂକାରର ଅଭାବ ସୂଚିତ ହୁଏ ।

କରନ୍ତୁ ୯ ମଲେ ଦହଁ ଜ୍ଞାତ ॥ ଦାଣ୍ଡେ ନ ଜାଣନ୍ତୁ ଖଗ୍ଗର ଚାତ ॥ ସମସ୍ତଙ୍କ ଇଷ୍ଟଦେବତା ଖ୍ୟାତ ୧୦ ॥ କୋତଗ୍ ଅଖା ପଲଙ୍କ-ସୁପାତ ॥ ଏକାନ୍ତ ୧୧ କଥାକୁ ବଜାରେ ଖ୍ୟାତ ॥ ଥୁଆଥୋଇ ୧୨ ହୋନ୍ତୁ ଅଣକ ନାତ ॥ ମହାଶର ଯହିଁ ବାଡ଼ିଶ ପାତ ॥ ଉଜମ୍ମା ଦ୍ଦବସ ୧୩, ଦ୍ଦବସ ଗତ ॥ ସ୍ୱପତ୍ନୀ-ସ୍ନେହରେ ନ ଥାନ୍ତୁ ମାତ ॥ କୁଳ କୁଟୁମ୍ବରେ ଲମ୍ପଟ ଥାନ୍ତୁ ॥ କୋଟିଏ ଉ୍ଣା ଅଯୁତେ ଘାଦାନ୍ତୁ ୧୪ ॥

ସେ ଗ୍ରଜ୍ୟ ମହାଜନ ମହାସାମନ୍ତ । ଦୋକାନେ ୧୫ ବସି ଖାଇ ବଣା ବଣା ଅନ୍ତ ୧୬ ॥ ବଡ଼ଲେକେ ସଂପାଦନ୍ତୁ ୧୭ ମେଣ୍ଢା ଛେଳ ଦନ୍ତ ॥ କୋଦୁଅ ୧୮ ପେଜ ହାଣ୍ଡିରେ । ହାପୁରୁଥାନ୍ତୁ ମାଣ୍ଡିରେ ୧୯ ॥ ମନ ଥାଇ ଭଣ୍ଡରେ ୨୦ । ଅଠର ଗଣ୍ଡିଆ କମ୍ବଳ ୨୧ ଭନା ପିନ୍ଧି ବୁଲନ୍ତୁ ଦାଣ୍ଡରେ ॥ ହାଡ଼ ବାଉର ଗୋଜି ୨୨ ଠି । ଫାଳଆ ସତ୍ତାଇ ଖୋଜ ଟି ॥ ଭେଣ୍ଡିଆମାନଙ୍କ ଭୋଜଟି ॥ କରନ୍ତୁ

୯-ହାଣ୍ଡି କରବା—ଜ୍ଞାତବର୍ଗଙ୍କ ମୃତକ ଅଶୌଚରେ, ପୁରୁଣା ହାଣ୍ଡି ପକାଇ ଆଦକୁ ଅନ୍ତର କର ନୂଆ ହାଣ୍ଡି କରବା କିୟା । ୧୦-ଇଷ୍ଟଦେବତା ଖ୍ୟାତ —ସ୍ୱୟଂ ଇଷ୍ଟଦେବତା ଏହ୍ଧ ଖ୍ୟାତ । ୧୧-ଏକାନ୍ତ—ରହସ୍ୟକ୍ରୀଡ଼ା । ୧୨-ଥୁଆଥୋଇ—ବଧବା ସ୍ତ୍ରୀ ଅନ୍ୟକୁ ସ୍ୱାମୀ ରୂପେ ନେଇ ଚଳବା । ୧୩-ଉଜମ୍ମା ଦ୍ଦବସ—କେତେକ ଗଡ଼ଜାତର ରାଜା ଦ୍ଦବସର କାର୍ଯ୍ୟ ରାତରେ ଏବଂ ରାତର କାର୍ଯ୍ୟ ଦନରେ କରବା କଦଷ୍ଟ କରଥାନ୍ତ, ତାଙ୍କପରେ ଏପର ଚଳୁଥିଲେ । ୧୪-ଘାଦାନ୍ତୁ—ପଦାତକ ସୈନ୍ୟ । ୧୫-ଦୋକାନେ—ହୋଟେଲ୍‌ରେ । ୧୬-ଅନ୍ତ—ଉଦରସ୍ଥ ନାଡ଼ । ୧୭-ସଂପାଦବା—ଯୋଗାଡ଼କର ରଖିବା । ୧୮-କୋଦୁଅ—ତୃଣଧାନ୍ୟ ବଶେଷ । ୧୯-ମାଣ୍ଡି—ବଡ଼ ଚକଆ ଚିଆ ଆସନ । ୨୦-ଭଣ୍ଡ—ଉଣ୍ଡକଥା । ୨୧-କମ୍ବଳ—ରେଶମ । ୨୨-ଗୋଜି—ଗଳ, ଅଣଓସାରଆ ବାଟ ।

କୋଳଥ ଗଜା । କରଞ୍ଜ ତେଲରେ ଭଜା ॥ ସେ ରାଜ୍ୟ ଠାକୁରଙ୍କ ପୂଜା ॥

ଗୁଡ଼ିଆଣୀଟି କୁଜା ଟି । ଗୋଟିଏ ନୟନ ବୁଜାଟି ॥ ସେହି ରୂପେ ଗୋଲ୍ଲ ଗୋଲୁଣୀ, ପାଲଆ ପାଲଆଣୀ, ସାଲଆ ସାଲଆଣୀ, କାମ୍ପ କାମ୍ପୁଣୀ, କୁଡୁମ୍ବ କୁଡ଼ୁମ୍ବୁଣୀ, ବଳାସୀ ବଳାସୁଣୀ, ଆଳଅ ଆଳଆଣୀ, ଆରୁଆ ଆରୁଆଣୀ, କାରୁଆ କାରୁଆଣୀ, କେଉଟ କେଉଟୁଣୀ, କୁମୁଟି କୁମୁଟିଆଣୀ ୧୩ ।

ସେ ଦେଶରେ ଅଛନ୍ତି ପୁଣି । ବହୁତ ରାଣୀ ଓ ବହୁତ କାଣୀ ॥ ରାଣୀ କେଉଁମାନେ ଏବଂ କାଣୀ କେଉଁମାନେ ? ପାଇକାଣୀ, କାରକାଣୀ, ନାୟକାଣୀ, ରେଡ଼ିକାଣୀ; କାଣୀ ଏମାନେ ୧୪ । ରାଣୀ କେଉଁମାନେ ତାହା କହିବା ୧୫ । ଦେହେରାଣୀ, ମାଗୁରାଣୀ, ପଦ୍ମରାଣୀ, କୁନ୍ଦୁରାଣୀ, ଖଣ୍ଡୁରାଣୀ, ବାଜରାଣୀ, ପାଟରାଣୀ; ଏମାନେ ରାଣୀ ଅଟନ୍ତି ।

ପୁନରପି ସେ ରାଜ୍ୟରେ ଚମତ୍କାର ୧୬ ଅଛି । କି କି ୧୭ ଅଛି କି ? ଗୁଣ୍ଡିଆ ୧୮ ଭିତରେ ମରମ ଅଛି । କପାଳ ଭିତରେ କରମ ଅଛି । ବାଟ ଚାଲିବାରେ ଶରମ ଅଛି । ଜୀବର ଭିତରେ ପରମ ଅଛି । ସୂର୍ଯ୍ୟମଣ୍ଡଳରେ ଧରମ ୧୯ ଅଛି । ଗ୍ରୀଷ୍ମ ସମୟରେ

---

୧୩-ଗୋଲ୍ଲ, ପାଲଆ ଆଦି– କୁମୁଟି ଛଡ଼ା ଅନ୍ୟଗୁଡ଼ିକ ଦକ୍ଷିଣ ଓଡ଼ିଶାର ଶୂଦ୍ର ଜାତି ବିଶେଷର ନାମ, କୁମୁଟି ବୈଶ୍ୟ ଜାତି । ୧୪-ରେଡ଼ିକାଣୀ—ରେଡ଼ିକା ନାମକ ତେଲୁଗୁ ଜାତିର ସ୍ତ୍ରୀ । ୧୫-ତାହା କହିବା—ମାନ୍ୟାର୍ଥେ ବହୁବଚନ 'ଆମ୍ଭେ କହିବୁଁ'ର ବିକଳ୍ପ ରୂପ (ପ୍ରାଚୀନ) । ୧୬-ଚମତ୍କାର—ଆଶ୍ଚର୍ଯ୍ୟକର ବିଷୟ । ୧୭- କି କି—କଣ କଣ । ୧୮-ଗୁଣ୍ଡିଆ—ଛାତି, ହୃଦୟ । ୧୯-ଧରମ—ଧର୍ମଦେବତା ।

ଘରମ ୩୦ ଅଛୁ । ତପତ ପାଣିରେ ଗରମ ଅଛୁ । ଜନ୍ତୁଙ୍କ ଦେହରେ ଚରମ ୩୧ ଅଛୁ । ନାଗ ସଙ୍ଗମରେ ନରମ ୩୨ ଅଛୁ । ମୁହଁ ବୁଲାଇଲେ ଭରମ ୩୩ ଅଛୁ ।

ନ ଥିବାରେ କ କ ନାହିଁ, ତାହା କହିବା । ଯୋଗୀର ଆଳ ନାହିଁ । ଶୋଇବାକୁ ସାଳ ୩୪ ନାହିଁ । ବସିବାକୁ ପାଳ ନାହିଁ । ଘରରେ ଗୁଳ ନାହିଁ । ମୁଣ୍ଡରେ ବାଳ ନାହିଁ । ଧାତୁରେ ଝାଳ ୩୫ ନାହିଁ । ପୁଣ୍ୟକୁ କାଳ ୩୬ ନାହିଁ । ଦେହରେ ବଳ ନାହିଁ । ରଇତର ୩୭ ହଳ ନାହିଁ । ନହଲେ ଛଳ ନାହିଁ । ବୁଲିବାକୁ ଥଳ ୩୮ ନାହିଁ । ସମ୍ବନ୍ଧକୁ ୩୯ କୁଳ ନାହିଁ । ଫରର ୪୦ ଠୁଳ ୪୧ ନାହିଁ । ନଡ଼ିଆର ଚୂଳ ନାହିଁ ।

ଏପରିରେ ୪୨ ସେ ରାଜ୍ୟରେ କୋଟିଏ ଊଣା ଦଶ ହଜାର ଫଉଜକୁ ମହାବାହାଦୁର ଦଶ ଦଶ ସରଦାର । କେଉଁ କେଉଁ-ମାନେ ? କାଞ୍ଚି ବୈରଗଞ୍ଜନ, ଚୋଡ ଘାଟରାଇମଲ୍ଲ, କୁଣ୍ଡା ଶବ ଶଲ୍, ଗନ୍ଧସାର ରଣହାଦୋଳା, ମଦରଙ୍ଗା ମେଦମାରସ୍ତୁ, କଳମ୍ବ ବଳଆର ସିଂହ, କଳଆର ୪୩ ବଳଆରଜ, ନାଳଆଟାକରେ

---

୩୦-ଘରମ—ଘର୍ମ, ରୌଦ୍ର । ୩୧-ଚରମ—ଚର୍ମ । ୩୨-ନରମ—ନର୍ମ, କୌତୁକ । ୩୩-ଭରମ—ଭ୍ରମ, ଭରମିଯିବା । ୩୪-ସାଳ—ପଲ୍ଲ । ୩୫-ଝାଳ— ଧାତୁକୁ ଯୋଡ଼ିବା ପ୍ରକ୍ରିୟା । ୩୬-ପୁଣ୍ୟକୁକାଳ—ପୁଣ୍ୟ କର୍ମ ଲାଗି ଉପଯୁକ୍ତ ସମୟ । ୩୭-ରଇତ—କୃଷକ, ରଯ୍ୟତ । ୩୮-ଥଳ—ସ୍ଥଳ । ୩୯-ସମ୍ବନ୍ଧକୁ କୁଳ—ବୈବାହିକ ସମ୍ବନ୍ଧ ସ୍ଥାପନ ପାଇଁ କୁଳ-ମର୍ଯ୍ୟାଦାର ଆବଶ୍ୟକତା । ୪୦-ଫର—ଚର୍ମ ଆଚ୍ଛଣି । ୪୧-ଠୂଳ—ଧରିବା ଲାଗି ମୁଠି । ୪୨-ଏପଶରେ—ଏପ୍ରକାର ହୋଇଥିବା । ୪୩-କଳଆର—ଘୋଡ଼ା ମୁହଁରେ ଦେବା ଲୌହ ଉପକରଣ ।

ଖାଲିଆସୁଛ । ଯୁଦ୍ଧ ଦେଖିଲେ ପଛଘୁଞ୍ଚା ଦିଅନ୍ତି । ଛୁରୀ ଦେଖିଲେ ଦୂର କରନ୍ତି । କାତି ଦେଖିଲେ ଗୁଣ୍ଡି କମାନ୍ତି । ଖଣ୍ଡା ଦେଖିଲେ ଦଣ୍ଡା ହୋଇ ଶୁଅନ୍ତି । ଫର ଦେଖିଲେ ସର ଯାଆନ୍ତି । ଗୁଳି ଦେଖିଲେ ଗାଠରୁ ବଳନ୍ତି । ନଳ ଦେଖିଲେ ଗଳ ଯାଆନ୍ତି । ପଟା ୪୪ ଦେଖିଲେ ଛଟା ଗାଳନ୍ତି ୪୫ । ଗଦା ଦେଖିଲେ ପଦାରୁ ପଳାନ୍ତି । କୁନ୍ତ ୪୬ ଦେଖିଲେ ଅନ୍ତରେ ସଡ଼ନ୍ତି । ପ୍ରାସ ୪୭ ଦେଖିଲେ ହାସରେ ଥରନ୍ତି । ସାପ ଦେଖିଲେ ବାପ ବୋଲନ୍ତି । ଏତେ କଥାରେ କି ଅଛି; ଲୁହାଧରକୁ ଦେଖିଲେ ଜୁହାର ବୋଲି ପଳାନ୍ତି ।

ସେ ଦେଶର ବେଶ୍ୟା କପରି କି ? ଲେଭଡ଼ୀ ୪୮ ଲୀଳାବତୀ, ଥୋବଡ଼ୀ ୪୯ ଜଗାନ୍ମୋହିନୀ, ଲେସଡ଼ୀ ୫୦ କଳାବତୀ, ଭେଷଡ଼ୀ ୫୧ ଇନ୍ଦୁବଦନା, ଦାନ୍ତୁଡ଼ୀ କୁନ୍ଦରଦନା । ଏପରି ତାଙ୍କ ନାମ । ଅନୁକୂଳକୁ ସେ ବାମ ୫୨ ।। ଦେଖିଲେ ନିବର୍ତ୍ତଇ କାମ ।। ନେତ୍ରରେ ନରକ ୫୩ ଧାମ ।। କଣ୍ଠରେ କଉଡ଼ି-ଦାମ ୫୪ ।। ପଦ୍ମଗନ୍ଧେ ସ୍ୱେଦକ ଝାମ ୫୫ ।। କେନ୍ଦୁ କାଠ ପରି ଶ୍ୟାମ ।। ଆକୁଆ ଠାକୁଆ ଗାଲ । ଖଣ୍ଡୁ ଭରତି ଖାଲ ।। ଭୁଲୁଚା ମଧ୍ୟରେ ଖାଲ ।। ଆଖିରେ ପରଳ ଜାଲ ।। ଶ୍ରବଣ ଅଳପ କାଲ ।। କୋତରା ଅଙ୍ଗେ ସାଲ ୫୬ ।। ଖଟ

---

୪୪-ପଟା — କାଠର ବୃହଦାକାର ଆଡ଼ଣି । ୪୫-ଛଟା ଗାଳିବା — ମିଛରେ ଅଭିନୟ କରିବା । ୪୬-କୁନ୍ତ — ଭୁଷା । ୪୭-ପ୍ରାସ — କ୍ଷେପଣୀୟ ଅସ୍ତ୍ର ବିଶେଷ । ୪୮-ଲେଭଡ଼ୀ — ଲମ୍ପଟୀ (ଓଡ଼ିଶାରେ ବେଶ୍ୟା ନ ଥିବାରୁ ଦକ୍ଷିଣ ଭାରତୀୟ ଢଙ୍ଗରେ ଇଣ୍ଟିପେରୁ ଭାବେ ବ୍ୟବହୃତ ହୋଇଛି) । ୪୯-ଥୋବଡ଼ୀ — ଅଲଜ୍ଜା । ୫୦-ଲେସଡ଼ୀ — ନିଷେଧିତ ହୋଇ ମଧ୍ୟ ପ୍ରାର୍ଥନା କାରିଣୀ ନାରୀ, ୫୧-ଭେଷଡ଼ୀ — ଅଶ୍ଳୀଳ ଚରିତ୍ର । ୫୨-ବାମ — ଶୁଭନାଶକ । ୫୩- — ଲେଞ୍ଜର ଅର୍ଥ । ୫୪-ଦାମ — ହାର । ୫୫-ଝାମ — ଶ୍ରାନ୍ତ । ସାଲ — ଯୋଡ଼ି ହେବା ବସ୍ତ୍ର, ଶାଲ ।

ଶେଷ ଛେଳିଗୁଲି ॥ ଏପରି ଅର୍ଜନ୍ତି ମାଲି :—କଷା ହେଲେ ପଳେ । ମୂଢ଼ ହେଲେ କଳେ ॥ କଉଡ଼ି ହେଲେ କଡ଼ାଏ । କୋଳଥ ହେଲେ ଅଡ଼ାଏ ॥ କୋତ ୫୭ ହେଲେ ଯୋଡ଼ାଏ । କସୁଁ ହେଲେ ଫଡ଼ାଏ ॥ ନାଗରମାନେ ୫୮ ଦେବାର ଏହା ।

ସଂସାରୀମାନଙ୍କ ୫୯ ବଡ଼ ମରଜି । କେତେ କହିବା ଗରଜି ଗରଜି ॥ ସ୍ତ୍ରୀ-ପୁରୁଷ ଯୋଡ଼ିଏ ଜାତି । ବାଟେ ଘାଟେ ଯେବେ ଭେଟାଭେଟି ହୋନ୍ତି ॥ ପୂର୍ବ ପରିଚୟ ନୋହେ କାହାର କେହି । ମୂଲକାତ ୬୦ ହେବା କ୍ଷଣେ ସମ୍ଭାଷଣା ଏହି :—ତୁମ୍ଭେ କିଏ ସେ ? ନା, ତୁମେ କିଏ ସେ ? ଆମ୍ଭେ ପୁରୁଷ । ନା, ଆମ୍ଭେ ସ୍ତ୍ରୀ; ତୁମ୍ଭେ ତ ପୁରୁଷ ଆମ୍ଭେ ତ ସ୍ତ୍ରୀ; ତୁମ୍ଭେ ଆମ୍ଭେ ସଙ୍ଗ ହେବା କି ? ଭଇଁଚ ୬୧ ଲଟାକୁ ଯିବା କି ? ରସିକ ସଖି, ସୌନ୍ଦର୍ଯ୍ୟକୁ ଗଖି ୬୨ ।

ଏ ରୂପେ ପ୍ରଭୃତାରୁ ସେ ରାଜ୍ୟ ରାଜାଙ୍କର ଶୌର୍ଯ୍ୟ, ସୌନ୍ଦର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, ଚାତୁର୍ଯ୍ୟାଦି ଗୁଣମାନଙ୍କୁ କହିବା । ଭଲ୍ଲାତକର୍ଣ୍ଣ ୬୩ ବୋଲି ସେ ରାଜ୍ୟର ମହାରାଜା । ଯାହାର ସିଂହ-ଦୁଆରେ ଘୁମୁର ୬୪ ବାଜବାଜା ॥ ସେ ମହାରାଜା ମହାପାତ୍ରମାନ ତାଙ୍କର ମତି କିପରି ? ଜନକ ରାଜାଙ୍କର ନ ଥିଲ । ଯୁଧିଷ୍ଠିରଙ୍କର

---

୫୭-କୋତ—ବଡ଼ କଳସୀ । ୫୮-ନାଗର—ଲମ୍ପଟ । ୫୯-ସଂସାରୀ—ସମ୍ପତ୍ତିଶାଳୀ । ୬୦-ମୂଲକାତ—ଦେଖା । ୬୧-ଭଇଁଚ—ବୃକ୍ଷ ବିଶେଷ । ୬୧ ଲଟା—ଘଞ୍ଚ ଲତାବୃକ୍ଷ ଥିବା ସ୍ଥାନ । ୬୨-ଗଖି—ମଥା (ରଜଡ଼ା ଭାଷାରେ), ପୁରୁଷଟି କହିଲା ଯେ ଆମ୍ଭ ଦେଶୀୟ ଆଚରରେ ରତିକ୍ରୀଡ଼ାର ଉପଯୁକ୍ତ ସ୍ଥାନ ଯେପରିକି ଅନ୍ୟନ୍ତ ଓଢ଼ଣାରେ ତାଙ୍କି ରହୁଥିବା ମସ୍ତକ ଶୋଭା ପ୍ରଦର୍ଶନର ଉପଯୁକ୍ତ ଅଙ୍ଗ, ତେଣୁ ଭଇଁଚ ଲଟାକୁ ଯିବା ଅକାରଣ । ୬୩-ଭଲ୍ଲାତକର୍ଣ୍ଣ—ଯାହାର କାନ ଭାଲୁଆ ପରି ଶ୍ରେଷ୍ଠ । ୬୪ ଘୁମୁର—ଅନୁନ୍ନତ ବାଦ୍ୟ ବିଶେଷ ।

ନ ଥିଲା । ଭୋଜ ରାଜାଙ୍କର ନ ଥିଲା । ମାନଧାତା ଚକ୍ରବର୍ତ୍ତୀଙ୍କର ନ ଥିଲା । ବୀର ବିକ୍ରମାଦିତ୍ୟ ମହାରାଜାଙ୍କର ନ ଥିଲା । ତେଣୁ କରି ମାଗଧମାନଙ୍କ ୬୫ ସଙ୍ଗେ ଧୂଳି ସୁପାତିରେ ୬୬ ପହୁଡ଼ ୬୭ ହୁଏ । ସୂର୍ଯ୍ୟୋଦୟକୁ ଯେବେ ବେଳ ଦୁଇ ଘଡ଼ି ପର୍ଯ୍ୟନ୍ତେ ଅନ୍ତଃପୁରେ ବିଜେ ହୁଅନ୍ତି । ଏହି ସମୟରେ ଖବା ୬୮ ଫରମାସି ୬୯ ହୁଅଇ :— ଚଢ଼ନ୍ଦ୍ରା ମାଂସ ଘଲଡ଼କୁ ନପଶୁପକ୍ଷୀ ଝୋଳ । ନ ଅଣ୍ଟିଲା ପରି ମହାସୁଆରଙ୍କୁ ଖବାଫରମାସି ହୁଅଇ । କଳାକଣ୍ଠି ଗଞ୍ଜେଇ ପଙ୍ଗର ସେରେ ଚୂର୍ଣ୍ଣ ପ୍ରସାଦ ସେବା ହୁଅଇ । କାଆ ପରାପେ ୭୦ ଲଘୁ ଆହାର ହୁଅଇ । ସୁକୁମାର ମଣୋହି ୭୧ ବଢ଼ିଲା ୭୨ ଶେଷରେ ଅନାସ୍ଥାର ଆଚମନ ବଢ଼ଇ । ଶୁଙ୍ଖ ୭୩ ଖଇକୁଣ୍ଡରୁ ଆସିଥିବା ଚଣ୍ଡାଳଚର୍ବିତ ଗୁଣ୍ଡି ଗୁଆ ବିଡ଼ିଆ ଲାଗି ୭୪ ସମୟରେ ପୁରୋହିତ ଅକଲ୍ୟାଣ ମହାପାତ୍ର ଗୋସାଇଁ ଆସି ଅମଙ୍ଗଳାରୋପଣ ୭୫ ସାରି ଏପରି ଆଶୀର୍ବାଦ ଦିଅନ୍ତି । କି ରୂପେ କି :—

ରାସଭସ୍କନ୍ଧମାରୂଢ଼ୋ ଗୃଧ୍ରଗୋମାୟୁ ଭକ୍ଷିତାମ୍ ।
କୁଟୁମ୍ବଃ କ୍ଷୀଣତାଂ ଯାତୁ ଯୋଷିତ୍ ଭ୍ରଷ୍ଟା ଭବାସ୍ତୁ ହି ॥
ଆଶୀର୍ବାଦଃ ଶିରଶ୍ଛେଦଃ ପତ୍ନୀଭ୍ରଷ୍ଟଃ ତଥୈବ ଚ ।
ପୁତ୍ରପୌତ୍ରାଃ କ୍ଷୟଂ ଯାନ୍ତୁ ନିଷ୍କୁଟୁମ୍ବୀ ସୁଖୀ ଭବ ॥

---

୬୫-ମାଗଧ — ଭାଟ । ୬୬-ସୁପାତିଶେଯ । ୬୭-ପହୁଡ଼ — ଶୟନ । ୬୮-ଖବା — ରୋଷେଇ । ୬୯-ଫରମାସି — ଆଦେଶ । ୭୦-ପରାପେ — ପର, ପ୍ରାୟ ଶବ୍ଦ । ୭୧-ମଣୋହି — ଭୋଜନ । ୭୨-ବଢ଼ିବା — ସମାପ୍ତ ହେବା । ୭୩-ଶୁଙ୍ଖ — ଖାଣ୍ଟି । ୭୪-ବିଡ଼ିଆ ଲାଗି — ପାନଖିଆ । ୭୫-ମଙ୍ଗଳାରୋପଣ — ବିବାହାଦି ଶୁଭକର୍ମର ପ୍ରଥମ କର୍ମ ।

ଏପରି ଦୀର୍ଘାୟୁ ପ୍ରତିପତ୍ତିକୁ ଆଶୀର୍ବାଦ ଗ୍ରହଣାନ୍ତରେ ରାଜାଙ୍କର ଥିବା ପ୍ରତିକୂଳ ଜ୍ୟୋତିଷରତ୍ନେ ଦିନାନ୍ତ ପାଞ୍ଜି ପଞ୍ଚାଙ୍ଗ ୭୬ ଜଣାନ୍ତି । କପର କ :—

ତୈଳାଙ୍ଗା ଯବନା ପୁଲନ୍ଦଗୃହିଣୀ ପୋଟା ବହ୍ନର୍ଦାସିକା
ଲଜ୍ଜା ସର୍ପ ବିଲୋଚନା ଚ ଶବଶ୍ଚ ହୀନ ସ୍ୱର ଯୋଷିତା ।
ଏତେ ନାଶପ୍ରଦାଶ୍ଚତେ ନରପତେ ଦନ୍ତାଶିଷଂ ସର୍ବଦା
ଗୋଧା ଗୃଧ୍ରପକ୍ଷୀ ଚ ପେଚକପକ୍ଷୀ କୁର୍ବନ୍ତୁ ସୁମଙ୍ଗଳମ୍ ॥

ମହାରାଜ ! ମଙ୍ଗଳବାର ପନ୍ଦର ଦଣ୍ଡ ଥାଇଁ ଶୁକ୍ରବାର ପ୍ରବେଶ ହେବ । ତିଥି ପୂର୍ବାଷାଢ଼ା ୭୭ ଅଣତୃଶ ଦଣ୍ଡ । ଆୟୁଷ୍ମାନ୍ ନକ୍ଷତ୍ର ୭୮ ବୟାଳିଶ ଦଣ୍ଡ । ଦୁଇପାଦ ୭୯ ଚନ୍ଦ୍ର ପନ୍ଦର ଦଣ୍ଡ । ବୃଷ ୮୦ କରଣ ୮୧ ଷାଠିଏ ଦଣ୍ଡ । ରବି ତେଜଦ ଅଂଶ ପଞ୍ଚବିଂଶ କଳାକୁ ମାସର ସାତଦିନ ୮୨ ଭୋଗ ହେଲା । ତାର ସପ୍ତମ ୮୩, ଚନ୍ଦ୍ର ଅଷ୍ଟମ ୮୪ । ଦିନଯାକ ବିଷ୍ଟି ୮୫ କରଣ । ମହାରାଜ, ସମସ୍ତ ଶୁଭ ହୋଇ ଅଛନ୍ତି । ବାମ ପାଖ ଶ୍ରୀଅଙ୍ଗ ମଧ୍ୟ ସ୍ଫୁରୁଥିବ । ଦକ୍ଷିଣ ଦିଗକୁ ଯିବା । ଆଜ ଅର୍ଦ୍ଧରାତ୍ର ସମୟରେ

---

୭୬-ପଞ୍ଚାଙ୍ଗ — ପାଞ୍ଜିର ଏହି ପାଞ୍ଚୋଟି ବିଷୟ — ବାର, ତିଥି, ନକ୍ଷତ୍ର, ଯୋଗ, କରଣ । ୭୭-ପୂର୍ବାଷାଢ଼ା — ତିଥି ନୁହେଁ, ନକ୍ଷତ୍ର ବିଶେଷ । ୭୮-ଆୟୁଷ୍ମାନ୍ — ନକ୍ଷତ୍ର ନୁହେଁ, ଯୋଗ ବିଶେଷ । ୭୯-ଦୁଇପାଦ — ଚତୁଷ୍ପଦ କରଣର ବ୍ୟଙ୍ଗ୍ୟ । ୮୦-ବୃଷ — କରଣ ନୁହେଁ, ରାଶି ବିଶେଷ (ଚତୁଷ୍ପଦ କରଣ ଓ ବୃଷଚନ୍ଦ୍ର ହେବା କଥା) । ୮୧-କରଣ — ତେତିଶ ଦଣ୍ଡରୁ ଅଧିକ ହେବା ଅସମ୍ଭବ । ୮୨-ସାତଦିନ — ମାସର ସପ୍ତମ ଦିନରୁ ରବ୍ୟଂଶ ୫ରୁ ୭ ମଧ୍ୟରେ ରହିବା କଥା । ୮୩-ତାର ସପ୍ତମ — ଏହା ଅତି ଅଶୁଭକର ବଧ ତାର । ୮୪-ଚନ୍ଦ୍ର ଅଷ୍ଟମ — ଅଷ୍ଟମ ଚନ୍ଦ୍ର ଅଶୁଭକର । ୮୫-ବିଷ୍ଟି — ସର୍ବାପେକ୍ଷା ଅଶୁଭକର କରଣ (କରଣଟିଏ ଦିନସାରା ରହି ନପାରେ) ।

ପନଅର୍ଁ ଲଗିକି ୮୬ ଉତ୍ତମ ଯୋଗାଉନ୍ତି । ସେ ଦ୍ରବ୍ୟ ଅବଧାନଙ୍କୁ ଅ:ସିବ ୮୭ ।

ଏମନ୍ତ ପଞ୍ଜିଙ୍କ ଶ୍ରବଣ ବର୍ତ୍ତିଲ ଉତ୍ତାରୁ ଦନ୍ତଧାବନ ସୁନେଇ ୮୮ ଏକାବେଳେକେ ବର୍ତ୍ତିଲ ୮୯ । ଦ୍ୱାଦଶାଙ୍ଗୁଳ ସ୍ଥୂଳ ଅଷ୍ଟାଦଶାଙ୍ଗୁଳ ଦୀର୍ଘ ଚିତ୍ରକଳାସନ ୯୦ ଉପରେ ଦେବାର୍ଚ୍ଚନ ୯୧ ବର୍ତ୍ତିଲ । ନିରକ୍ଷର ବାହ୍ମଣପଣ୍ଡିତ ପୁରାଣପଣ୍ଡା ଗୋସାଇଁ ଶୁଣାଇବାର ପୁରାଣ କପଟ ବୋଲନ୍ତେ :—

( ପୁରାଣ )

ଗୁଣ୍ଡସେଠୀ ପୁରୁଷାସ୍ତୁ ଶ୍ଳୋକରାଣି ଚ ଶେଖରମ୍ ।
ଖରଂ ଚ ମନସି ଧ୍ୟାତ୍ୱା ତତୋ ଜପ୍ୟମୁଦାହରେତ୍ ॥
କୁଳଟାନାଂ ନିସର୍ଗାୟ ନମସ୍ତସ୍ମୈ ଦୟାଳବେ ।
ଯେନ ତାଃ ସ୍ୱପତିଂ ହତ୍ୱା ପାଳୟନ୍ତି ପରାପରମ୍ ॥

ଶ୍ରୀ କୁଳଟାୟୈ ନମଃ

କଦାଚ ବ୍ରହ୍ମହତ୍ୟାୟାଂ କଳିଂ ପପ୍ରଚ୍ଛ ଦୁର୍ମ୍ମତିଃ ।
କେନୋପାୟେନ ସଂସାରାତ୍ ତରିଷ୍ୟନ୍ତୀତି ଦେହିନଃ ॥
ସର୍ବୋଚ୍ଚ ଦନ— ବୃକ୍ଷୁଧ୍ୟଂ ଧରଣାସି ମହାମତେ ।
ବପ୍ରବେଶା ମହାଶିକ୍ଷା ଯତ୍ନେରକ୍ଷା ମଠିସ୍ତତଃ ॥

---

୮୬-ପନଅର ଲଗି—କ୍ଷୌରକର୍ମ (ଗ୍ରାମ୍ୟ ଭାଷା) । ୮୭-ସେ...ଆସିବ—ଆପଣ ଏହା ଜାଣନ୍ତୁ (ଗ୍ରାମ୍ୟ ଭାଷା) । ୮୮-ସୁନେଇ—ଝାଡ଼ାଫିବା (ଗ୍ରାମ୍ୟ ଭାଷା) । ୮୯-ବର୍ତ୍ତିଲ—ସମ୍ପାଦିତ ହେଲା । ୯୦ ଚିତ୍ର କଳାସନ—ଚିତ୍ରିତ କ୍ମ୍ବଳ ରୂପୀ ଆସନ । ୯୧-ଦେବାର୍ଚ୍ଚନ—ସ୍ନାନାଙ୍କ ସଂଧ୍ୟା, ପୂଜା କର୍ମ ।

## ଓଁ କଳଙ୍କୁବାଚ

କଥୟାମି ପରଂତତ୍ତ୍ୱଂ ଶୃଣୁ ବତ୍ସେ ସମାହିତଃ ।
ଅନୁଗ୍ରହ ସମେ ପାତଂ ଯତୋଽସି ମୟି ଭକ୍ତିମାନ୍ ॥
ପାପାତ୍ସଂବର୍ଦ୍ଧତେ ଲକ୍ଷ୍ମୀଃ ପାପାତ୍ସଂବର୍ଦ୍ଧତେ ଯଶଃ ।
ପାପାଦ୍ଦୀର୍ଘଂ ଭବେଦାୟୁଃ ପାପାତ୍ ନାସ୍ତ୍ୟଧିକଂ ବ୍ରତମ୍ ॥
ସେବ୍ୟତାଂ ପାପକର୍ମାଣି ତ୍ୟଜ୍ୟତାଂ କୃତିନୋ ଜନାଃ ।
ସର୍ବପାତକ କର୍ତ୍ତୃଣାଂ ସ୍ଥାନଷେତସମୁଦାହୃତମ୍ ॥
ଏକସ୍ତ୍ରେ ବଧ ସଂପ୍ରାପ୍ତ ବ୍ରାହ୍ମଣଂ ଚ ବିଶେଷତଃ ।
ତିରସ୍କାରଂ ଚ ସହ୍ରିଦଂ ନାନା ଜାତି ସମୁଦ୍ଭବମ୍ ॥
ନ ପିବେତ୍ସ୍ୱପତେବସ୍ୟ (?) ନାପିତାନ୍ ବ୍ରାହ୍ମଣାନ୍ ଭଜେତ୍ ।
ବିବିଧା ଚିନ୍ତୟା ଶାନ୍ତ ଯାବନ୍ନ ଚରଣ ଦ୍ୱୟମ୍ ॥
ଗଙ୍ଗାୟାଂ ସ୍ନାପ୍ୟମାଲୋକ୍ୟ ବିନା ସ୍ନାନଂ ଗୃହଂ ବ୍ରଜେତ୍ ।
ଦୃଷ୍ଟ୍ୱା ଗୋବ୍ରହ୍ମହନ୍ତାରଂ କର୍ତ୍ତାନୃଣ୍ୟଂ ବିମୃତ୍ୟତାମ୍ ॥
ଲବ୍ଧ ବିତ୍ତଂ ନ ଭୁଞ୍ଜିତୋ ବିତଯୁତଃ ଦ୍ୱିଜୋତ୍ତମଃ ।
ସ୍ତେୟୈଃ ସର୍ବନିତୈର୍ବିତ୍ତୈଃ ଶରୀରଂ ପାଳୟ ସ୍ୱକମ୍ ॥
ସଂପର୍କଂ ପଣ୍ଡିତୈଃ କୃତ୍ୱା ତାତ କ୍ଷୋଭଃ ଭବିଷ୍ୟତି ।
ଅକ୍ଷରବ୍ୟଞ୍ଜନ ସଂଗ୍ରନ୍ଥା ଶକାରୈଃ ତସ ଯୈଃ ନତ୍ୟମ୍ ॥
ଇଦଂ ରହସ୍ୟମାପୁଷଂ ମୁକ୍ତିସ୍ନେହାତ୍ତବାଗ୍ରତଃ ।
ଅନେକ କର୍ମଣାଂ ନାଶଃ ପରସ୍ୱେହ ଚ ଯାସ୍ୟତି ॥

ଓଁ ହରି ତତ୍ସତ୍ । ଇତି ଶ୍ରୀ ବିଧୃତ ନାନା ପାପତନୋର୍ହିତଃ ମ୍ଳସ୍ତ୍ରାମିତସାବନ ତପୃତ୍ତି କଂସହାତି ନରକଚୟ ପରିତଯୋ: ଲ୍କିତୁର୍ଯ୍ୟ ପ୍ରତିପାଦକ କୌତୁକାର୍ଣ୍ଣବେ ମହାପୁରାଣେ କଳି ଦୁର୍ଣ୍ଣୀତି ସମ୍ବାଦେ ସପ୍ତୋଦଶୋଽଧ୍ୟାୟଃ ।

ଅମଙ୍ଗଳଂ ମହାପୂର୍ବଂ ଜଗତ୍ତୁ ପ୍ରଳୟଂ ଯାତୁ ।
ଶୀଘ୍ରଂଚେ ବର୍ଷନ୍ତୁ ମେଘୋଽଶୁଭ ବପ୍ରା କୃଷିକ୍ଷୀଣା ॥

ପୁରାଣପଣ୍ଡା ୰ଗୋସାଇଁ ଏପରି ପାରାୟଣ ସାରି, ପୋଥି ବାନ୍ଧି, ପୋଥି ଶ୍ରୀ ମହାରାଜାଙ୍କ ନାକରେ ଛୁଆଁଇ ପ୍ରସାଦ ବହୁଆଡ଼-ଦଳ ୯୨ ଚକ୍ଷୁରେ ଘଷି ଦେଇ ଶ୍ରୀ ମହାରାଜାଙ୍କଠାରୁ ଆଶୀର୍ବାଦ ଘେନ ବିଦା ୯୩ ହୋଇଗଲେ ଉତ୍ତାରୁ ହବାନ ଆନ୍ଧଦୁର୍ବୋଧ ଧୁରନ୍ଧର ବେହେରା ମହାପାତ୍ରେ ଆସି ଶ୍ରୀସ୍ତମ୍ଭରେ ୯୪ ପଞ୍ଚାଶ ଜଣ ବାଉରି ଭଲଲୋକ ଥିବାରେ ଅତି ଏକାନ୍ତରେ ଅତି ଧୀର କରି ମେଘ-ଗର୍ଜିତ ସାମାନ୍ୟ ସ୍ୱରରେ ପିଠିଆଡ଼ ସ୍ତମ୍ଭରେ ଯାଇ ରହି କହନ୍ତି । କିରୂପେ କି :—"ହେ ମହାରାଜ, ସଦାନନ୍ଦ ବ୍ରହ୍ମବୃତ୍ତି ଗୋସାଇଁଙ୍କର ଝିଅ ଗୋଟିଏ, ସନ୍ନ୍ୟାସୀ ଅଚ୍ୟୁତ ତୀର୍ଥସ୍ୱାମୀଙ୍କର ଝିଅ ଗୋଟିଏ, ରାଜଗୁରୁ ଗୋସାଇଁଙ୍କର ଝିଅ ଗୋଟିଏ, ପୁରୋହିତ ଗୋସାଇଁଙ୍କର ଝିଅ ଗୋଟିଏ ଏପରି ବୃଦ୍ଧ କନ୍ୟାଙ୍କର ନାକନାଉଲା ୯୫ ସମୟରେ ଉଚିତ ହେବାର ଦୁର୍ବାକ୍ଷତ ୯୬ ବିଧି ହୋଇ ନ ପାରିବାରୁ ଏହି ନଜକରେ ୯୭ ବୃଦ୍ଧ କନ୍ୟାଯାକ ପିତୃତର୍ପଣ ତୀର୍ଥରେ ପୁଷ୍ପବୃଷ୍ଟି ହେଲେ । ଦେଉ ୯୮ ତ ଗଧପତି ୯୯, ସାକ୍ଷାତ୍ ଅଧର୍ମ ଅବତାର, ଭୂମି-ଶବର ୧ ପରି ମହାରାଜଙ୍କୁ କରି ଆଜ୍ଞା ଦେଉ ଅଛନ୍ତି; ମହାପ୍ରଭୁ ୨ ପାରମ୍ପର୍ଯ୍ୟ କ୍ରମରେ ମହାରାଜାଙ୍କ ଦରବାରରେ ଚଳି ଆସୁଥିବା

---

୯୨-ଦଳ — ପତ୍ର । ୯୩-ବିଦା — ବିଦାୟ । ୯୪-ଶ୍ରୀସ୍ତମ୍ଭ — ରାଜାଙ୍କ ସମ୍ମୁଖ । ୯୫-ନାକନାଉଲା — ଅଜବ ଶବ୍ଦ, କାନନାଉଲାରେ କାନଫୋଡ଼ା ହୁଏ । ୯୬-ଦୁର୍ବାକ୍ଷତ — ନିଷେକ (ରାଜୁଡ଼ା ଶବ୍ଦ) ୯୭-ନଜକ — ନିକଟ । ୯୮-ଦେଉ — ଦେବ, ମହାରାଜା । ୯୯-ଗଧପତି — ଗଜପତିର ବ୍ୟଙ୍ଗ । ୧-ଭୂମି-ଶବର — ଭୂମିସୁର (ବ୍ରାହ୍ମଣ)ର ବ୍ୟଙ୍ଗ । ୨-ମହାପ୍ରଭୁ — ରାଜାଙ୍କ ସମ୍ବୋଧନ ।

ନ୍ୟାୟକୁ ଚାହୁଁଲେ ସେ ଶୂଦ୍ର କନ୍ୟାଙ୍କୁ ସରକାରଙ୍କୁ ୩ ଆଣିବାକୁ ହେବ । ନୋହିଲେ, ଗତ ସହରରେ ରେଜ ୪ ବୁଲିବାର କଟୁଆଳ ଅବା ପଠାଣ ପାଇକେ ନେବାର ମର୍ଯ୍ୟାଦା । ଭୟ ନ ଥିବା ପକ୍ଷକୁ ମାମୁଁ ଭୋଗ କରିବାର ପସନ୍ଦ । ଏବେ ମହାରାଜାଙ୍କ ପରି ପରମାବଦେକ ଶ୍ରୀ ଖାମିନ୍ଦ ୫ ବିଜେ ଅବସ୍ଥାନ କରୁ କରୁ ରାଜ୍ୟ ଅରାଜକ ହେଲ ପରିରେ ୬ । ସେ କନ୍ୟାମାନଙ୍କୁ ପୂର୍ବରୁ ବିବାହ ହୋଇଥିବା ଅଣ୍ଡିରାମାନେ ଆସି ଢେଣ୍ଡ଼ିଯିବାକୁ ନାନା ହେଙ୍ଗମା ୭ କରୁଅଛନ୍ତି । ଏଥିକୁ ରାଜ ଆଜ୍ଞା ହେଲେ ସେ କନ୍ୟାମାନଙ୍କର ମାଆମାନଙ୍କୁ ବଦଳ ଡିଆଯାଇ ସମୁଝାଇ ୮ ଦେବାକୁ ପଡ଼ିବ । ମହାରାଜ ! ଲୋକେ କହିବାରେ ବିବାହ ପୁଣି ଠିକଣା ନାହିଁ । ଗୁମୁଣ୍ଡିଆ ଉପରେ ବେଦୀ ତଳରେ, ପୂର୍ବାହ୍ନତ ପୁଣି କର୍ମ ୯ କରି ହସ୍ତଗଣ୍ଠି ପକାଇ ଦେଇ ବାହାରିଗଲେ । ମହାରାଜ ! ଯଥାବିଧିରେ ଯେ ଟି । ନଦୀ ତଟରେ ହେଲେ ହୁଅଇ, ଚେଠା ମାଳରେ ହେଲେ ହୁଅଇ, ଭଗ୍ନ ଦେବାଳୟରେ ହେଲେ ହୁଅଇ, ଏପରି ସିନା ବଡ଼ଲୋକମାନଙ୍କର ମର୍ଯ୍ୟାଦା । ପୁରୋହିତ ବାକ୍ୟ ୧୦ ପଢ଼ି ପଢ଼ି ହସ୍ତଗଣ୍ଠି ପକାଇ ଦେଇଯିବାର କପଟରେ ହେଲ ? ଏ ସକଳରୁ ମୁଁ ପ୍ରାନ୍ତରୁ ଜଣାଇଲି ପରି ହୁକୁମ ହେବାର ଅଛି । ନୋହିଲେ ରାଜଧର୍ମକୁ ବହୁତ ଅସୁନ୍ଦର ଦିଶିବ । ଦିବ୍ୟ ଅବଧାନଙ୍କୁ ଆସିବ ୧୧ । ମହାପ୍ରଭୁ ! ଏ ସଂଶୟ ତ ଏପରି, ଆଜ ଗୋଟିଏ

---

୩-ସରକାର—ରାଜାଙ୍କ ଖୋଦ୍ ଅଧୀନ (ବେଗିମାରୂପେ) । ୪-ରେଜ—ପ୍ରତ୍ୟହ । ୫-ଖାମିନ୍ଦ—ପ୍ରଭୁ । ୬-ପରିରେ—ପ୍ରାପ୍ତ ଅବସ୍ଥାରେ । ୭-ହେଙ୍ଗମା—ଗୋଳ । ୮-ସମୁଝାଇ—ବୁଝାଇ । ୯-କର୍ମ—ବିବାହର କର୍ମାଙ୍ଗି ୧୦-ବାକ୍ୟ—ଶାସ୍ତ୍ରୀୟ ବଚନ । ୧୧-ଦିବ୍ୟ ଅବଧାନଙ୍କୁ ଆସିବ—ରାଜା ଏହା ବୁଝନ୍ତୁ, ଏପର ଅର୍ଥ ।

ବିଷୟ ଏହିପରି :—ଗୋଟିଏ ଅବିଦ୍ୟା ୧୨ ଭଲଲୋକ ଜଣଙ୍କ ଘରେ ଜାତ ହେଲାବୋଲି ଶୁଣାଯାଉଅଛି । ଏମନ୍ତ ଅନ୍ୟାୟ ପ୍ରବର୍ତ୍ତିଥିଲେ ମୁଲକକୁ ୧୩ ଅମଙ୍ଗଳ ହେବ । ଆଜ୍ଞା ! ୧୪ ପୁରୋହିତେ ଲକ୍ଷ ଲକ୍ଷ ଭରଣ ଲୁଣ, ଅନେକ ମାଛ, ସହସ୍ର ସହସ୍ର ବୋଝ ସାରୁ ଅମଲ କରୁଥିବାରୁ ଉତ୍କୃଷ୍ଟ କୁଳରେ ସମ୍ଭୂତ ଅଟନ୍ତି । ବାପେ ଯେବେ ଦଶବିଂଶ ବର୍ଷ ଭେଣ୍ଡିଆ ଥାନ୍ତେ, ମାଏ ଗନ୍ଥ ପର୍ଯ୍ୟନ୍ତ ବ୍ୟାପିବାର ଅଖଣ୍ଡ ପାଣ୍ଡିତ୍ୟ ସଂପାଦିଥାନ୍ତେ ତେବେ କହନ୍ତେ ୧୫ । ଏବେ ହେଲେ ପଦେ ପଦେ ମନୁଷ୍ୟ ଭାଷା ପରି ପ୍ରଣିତ ହୋଇ ଯାଉଥିବାର କଥା କହିବା ପରି ପରା ଶକ୍ତ ଅଛନ୍ତି । ଏପରି ଜ୍ଞାତସାରରେ ୧୬ ଅଛନ୍ତି, ବୃଦ୍ଧି ଅଛନ୍ତି । ଆପଣ ୧୭ ପୁଣି ଠିଆ ହୋଇ ବସି ପ୍ରଶ୍ନ କରି ପୁଣି ଯେନ ପକାଇଲେ ! ମହାରାଜା ତ ବ୍ରାହ୍ମଣ ଭକ୍ତ; ପ୍ରଭୁ, ସେ ତ ବ୍ରାହ୍ମଣ । ତାଙ୍କଠାରୁ କଉଡ଼ି ଜରିମାନା ୧୮ ଭୁଙ୍ଗଡ଼ା ଘରକୁ ୧୯ ଆସିବ ନାହିଁ । ଆଜ୍ଞା ହେଲେ, ଶହେ ବିସା ସାବଲା ୨୦ ଶୁଖୁଆ ଜରିମାନା ଦେଇ ଠାକୁରଘରମାନଙ୍କୁ ଦିଆଇବାକୁ ପଡ଼ିବ । ଏଥିଉତ୍ତାରୁ, ମହାରାଜ, ସମସ୍ତ ଗଡ଼ଆ ୨୧ ଧାଙ୍ଗଡ଼ାମାନେ ୨୨, ସମସ୍ତ ଭୃତ୍ତୀ ରଇତମାନେ, ସିପାଇ ଭଲ

---

୧୨-ଅବିଦ୍ୟା— ମନ୍ଦକାର୍ଯ୍ୟ । ୧୩-ମୁଲକ — ରାଜ୍ୟ, ୧୪-ଆଜ୍ଞା — ବଡ଼ଙ୍କୁ ସମ୍ମାନ ଜ୍ଞାପକ ସମ୍ବୋଧନ । ୧୫-ବାପେ…କହନ୍ତେ — ପୁରୋହିତଙ୍କ ପିତା ୧୦/୨୦ବର୍ଷ ବୟସ୍କ ହୋଇଥିଲେ ନରୁବା ମାତା ବହୁ ଧରିବା ଭଲ ପଣ୍ଡିତା ହୋଇଥିଲେ ତାହାଙ୍କୁ ଏ ବିଷୟରେ ଦଆର ଥାନ୍ତେ, ଏପରି ଅର୍ଥ । ୧୬-ଜ୍ଞାତସାର — ଜ୍ଞାନ । ୧୭-ଆପଣେ — ତୁମ୍ଭେ ପୁରୋହିତ । ୧୮ କଉଡ଼ି ଜରିମାନା — ଅର୍ଥଦଣ୍ଡ । ୧୯-ଭୁଙ୍ଗଡ଼ା ଘର — ରାଜକୋଷ । ୨୦-ସାବଲା —ଦୀର୍ଘାକୃତି ପତଳା ଲୁଣି ମାଛ । ୨୧-ଗଡ଼ଆ — ରାଜଧାନୀବାସୀ ୨୨-ଧାଙ୍ଗଡ଼ା — ବନ୍ୟ ଯୁବକ ।

ଭଲ ଲୋକେ,, ଗରିବ ଦରିଦ୍ରମାନେ ମଧ୍ୟ ଅନ୍ନବସ୍ତ୍ର ନ ମିଳିଲାରୁ ଏବେ ରହି ନ ପାରନ୍ତି । ପାପଡ଼ା ୨୩, କରଡ଼ି ୨୪, ଗୁଳୁଣ୍ଡା, ସଳପ ୨୫ ଏପରି ମିଳୁଥିବା ସୁଭିକ୍ଷ ଜାଗାମାନଙ୍କୁ ଯାଇ ଜୀଇ ଧେନବୁ ୨୬ ବୋଲି ଦୁଃଖ ଗୋଚର କରିବାରୁ ସମସ୍ତଙ୍କୁ ବାହାରିବାକୁ ଆଜ୍ଞା ହେଲେ, ରାଜ୍ୟ ବାହାର କରାଇ ଦେଲେ । ପ୍ରଭାତରୁ ଦେଶନ୍ୟାସ ୨୭ ନିମିତ୍ତରେ ଯିବାକୁ ଭୁଙ୍ଗା ମାଠିଆ, ଖାଲିଆ ଧଳମ ୨୮, ଚଷୁ ଛେଲୁଆ ୨୯, ତେଲ କଳସୀ ୩୦, ବାଳବିଧବା ସ୍ତ୍ରୀ, ନାଗସାପ, କପାମଞ୍ଜି, କଳାବିରାଡ଼ି ଏପରି ସମସ୍ତ ଅନୁକୂଳ-ସମ୍ଭାର ୩୧ ରଖି ଓଟକୁ ଜନସ ଢଆଇବା ସମୟରେ ଆମ୍ଭ ତାଲୁକା ୩୨ କଳମ୍ବ-ମୂଠା ୩୩ ସମ୍ବନ୍ଧ ଜନଶୂନ୍ୟପଡ଼ା ଗ୍ରାମରେ ଧାନୁଟା ଭିତରେ କୁଜଳଟାଏ ବାହାରିବାର ମହାଉତ୍ପାତ ୩୪ ଖବର ଶୁଣି ପ୍ରସ୍ଥାଣୋଦ୍ୟମ ମକୁବ ୩୫ କରାଇ ଫେରି ଶ୍ରୀଛାମୁକୁ ବାହାରି ଆସିଲି ।

ଏପରି ନତ୍ୟନତ୍ୟ ୩୬ ହକିକତ ୩୭ ଗୋଚର କରି ଢବାନାଢ ୩୮ ମେଲାଣି ହୋଇ ବଣକୁ ଯିବା ଉତ୍ତାରୁ ବୁରପାଖରେ

---

୨୩-ପାପଡ଼ା — ପର୍ପଟ ବୃକ୍ଷ । ୨୪-କରଡ଼ି — ବାଉଁଶ ଗଜା । ୨୫-ସଳପ — ନୁଆ ଜାତୀୟ ବୃକ୍ଷ ( ପାପଡ଼ା ଆଦିକୁ ଦୁର୍ଭିକ୍ଷ ବେଳେ ଲୋକେ ପେଟବିକଳରେ ଖାଆନ୍ତି ) । ୨୬-ଜୀଇ ଧେନବୁ — ବଞ୍ଚିବୁ । ୨୭-ଦେଶନ୍ୟାସ — ରାଜ୍ୟଶାସନ । ୨୮-ଧଳମ — ଚଟକା ମାଟି ପାତ୍ର । ୨୯-ଛେଲୁଆ — ମାଟିପାତ୍ରର ଖଣ୍ଡ । ୩୦-ତେଲ କଳସୀ — ଏହି ପର୍ଯ୍ୟାୟର ବସ୍ତୁଗୁଡ଼ିକ ଯାତ୍ରା ବିଘ୍ନକାରକ । ୩୧-ଅନୁକୂଳ-ସମ୍ଭାର — ଯାତ୍ରାରମ୍ଭବେଳେ ଦେଖିଲେ ଶୁଭକର ହେବା ବସ୍ତୁ । ୩୨-ତାଲୁକା — ଦେଶଖଣ୍ଡ । ୩୩ ମୂଠା — ଅନେକ ଗ୍ରାମକୁ ନେଇ ଗଠିତ ଅଞ୍ଚଳ । ୩୪-ଉତ୍ପାତ — ଦେଶ ପ୍ରତି ଅମଙ୍ଗଳକର ଶକୁନ, ଯଥା — ରାତିରେ କାଉ ରାବିବା । ୩୫-ମକୁବ — ରଦ୍ଦ । ୩୬-ନତ୍ୟନତ୍ୟ — ପ୍ରତିଦିନ । ୩୭-ହକିକତ — ନିବେଦନ । ୩୮-ଢବାନାଢ

ଷ୍ଟରଜଣେ ଲମ୍ପଟା ୩୯ ରକ୍ଷ୍ୟ ବପଖ୍ୟ 'ରାମ' ନାମ ଶୁଣାଉଥିବା ସମୟରେ ଦଣ୍ଡବାସୀ ୪୦ ହେବା ପୂଲନ୍ଦୀ ୪୧ ଦାସୀମାନେ ଆଣି ହାଜର କରିବାର ଦ୍ରବ୍ୟ ଶୁଦ୍ଧୋଦକରେ ଦେହପାଣି ୪୨ କରାଯାଏ ।

ଏମନ୍ତ ସମୟରେ ପ୍ରାଣାନ୍ତକ ୪୩ ବୈଦ୍ୟଚନ୍ଦ୍ର ଆସି ଶ୍ରୀହସ୍ତ ଦେଖି ଜଣାଇବାର କପଟରେ ବୋଲନ୍ତେ – ମହାପ୍ରଭୁ, ବାତ କଫ ବିକାର ହୋଇ ଆଜ ଶ୍ରୀଅଙ୍ଗ ଉତ୍ତମ ସୁଖ ଅଛୁ । ଲେମ୍ବୁରସ, କର୍ପୁର, ପଇଡ଼ପାଣି ୪୪ ମଣୋହି ହେବ । ସାୟଂକାଳ ୪୫ ସରିକ ମହାଦେଈଙ୍କ ୪୬ ଘୁମୁରେ ଭେଟଆଜ୍ଞା ୪୭ ହେବ । ଏପରି ଜଣାଇ ପ୍ରାଣାନ୍ତକ ବୈଦ୍ୟଚନ୍ଦ୍ର ଭେଟି ଘେନି ମେଲାଣି ହୋଇକରି ଗଲ ଉତ୍ତାରୁ ଘୁମୁରା, ଶୃଙ୍ଗ, ଢୋଲ, ତୁମ୍ଭା, ଢାମ୍ପ ଇତ୍ୟାଦି ୪୮ ମହାରାଜସଭା ସଞ୍ଚିତ ହେବାର ବାଦ୍ୟମାନ ବାଜିଲା । ଗାନ୍ଧର୍ବ ରାଜସଭା ପରି ସଙ୍ଗୀତ ପ୍ରବର୍ତ୍ତିଲା । ସେ ମହାରାଜା ତ ସଙ୍ଗୀତ ବିଦ୍ୟାରେ ପ୍ରବୀଣ ; ସିତାର ଧରି ରାଜ୍ୟାନ୍ତରରୁ ଆସି ଘୁମୁରେ ମୁଲକାତ ହେବା ଶୁଣି କି ଆଜ୍ଞା କଲେ—ସିତାର ତ ଆଣିଛୁ ଭ୍ରମରି ୪୯ ଆଣିନାହୁଁ କି ? ବୋଲି ପଚ୍ଛରି ଆଜ୍ଞା କଲେ । ଏପରିରେ ସେ ରାଜଧାମରେ ସମସ୍ତ ଗୁଣ ସମ୍ପତ୍ତି ପୂରି ଅଛନ୍ତି । ଆହୁରି

— ଦେଓ୍ୱାନ ପ୍ରମୁଖ । ୩୯-ଲମ୍ପଟା—ରାଜାଙ୍କ ପାଦସେବକ । ୪୦-ଦଣ୍ଡବାସୀ —ରାଜାଙ୍କ ବ୍ୟକ୍ତିଗତ ସେବାପାଇଁ ଅଯୋଗ୍ୟ ବାହାର ପୋଇଲା । ୪୧-ପୁଲନ୍ଦୀ—କନ୍ଦର୍ଣୀ । ୪୨-ଦେହପାଣି— ସ୍ନାନ । ୪୩-ପ୍ରାଣାନ୍ତକ — ବୈଦ୍ୟଚନ୍ଦ୍ରଙ୍କ ନାମ । ୪୪-କର୍ପୂର, ପଇଡ଼ପାଣି—ଉଭୟ ଯୋଗରେ ବସ୍ତୁ ହୁଏ । ୪୫-ସାୟଂକାଳ—ସନ୍ଧ୍ୟା । ୪୬-ମହାଦେଈ—ପାଟରାଣୀ । ୪୭-ଭେଟଆଜ୍ଞା—ରାଜାଙ୍କ ଭେଟ । ୪୮-ଘୁମୁରା ଆଦ—ସ୍ଥୂଳ ବାଦ୍ୟଯନ୍ତ୍ରମାନ । ୪୯-ଭ୍ରମର—ପାଲାରେ ବ୍ୟବହୃତ ।

ଗୋଟିଏ ଗୁଣ ମାତ୍ରକ ଅଳ୍ପ ଅଛି ; କେଉଁ ଗୁଣ କି ସେ—ରାଜା, ଦିବାନ, ରାଜଗୁରୁ, ପୁରୋହିତ, ଦଶ ସରଦାର, ଛେଣାୟକମାନେ, ସହର କଟୁଆଳ, ଖଣ୍ଡାବ୍ରାହ୍ମଣମାନେ, ଲମତାମାନେ, ଦଉପଟାଳ୍ଲୁ ଏମାନେ ଅଳ୍ପ କାଲ୍ ୫୦ ।

ଏକ ଦିନକରେ ଏକା ପୁରୋହିତଙ୍କୁ ଗୁଡ଼ି ସମସ୍ତେ ଥିବାରେ ଶ୍ରୀ ମହାରାଜାଙ୍କ ଖରଶେଖର ବୋଲାଇବାର ଅଶ୍ୱ ଏ ଉଚ ଘୋଡ଼ା ଆଗପିଲା ଦଉଡ଼ି ଛିଣ୍ଡାଇ ବୋଡ଼ାସାପ ପରି ଜଲଦି ୫୧ ସେ ଘୋଡ଼ା ଫିଟି ପଶି ଖନ୍ଦା ମାରି ୫୨ କରିବାରୁ ଦଉଡ଼ି ପଟାଳ୍ଲୁ ପହଞ୍ଚି ପୁରୋହିତଙ୍କୁ ଧରି ପକାଇ ଖୁନ୍ଦି ୫୩ କରି ଠାଙ୍କେ ଛେଚି ୫୪ ଦେଲା । ପୁରୋହିତେ ଆସି ମହାରାଜାଙ୍କୁ ଆଜ୍ଞା କଲେ । "ମୋତେ ମନୁଷ୍ୟ ମାଇଲା" ବୋଲି ଫିରାଦ କରିବାରୁ, ରାଜଗୁରୁଙ୍କୁ ରାଜ୍ଞୀ ଚଣ୍ଡର ଆଜ୍ଞା କଲେ "ଗୋସାଇଁ ! ପୁରୋହିତେ କି କହୁ ଅଛନ୍ତି ?"

ରାଜଗୁରୁ ଜଣାଇଲେ, "ମହାରାଜ, ସ୍ମାର୍ତ୍ତ ବୈଷ୍ଣବ ଦୁଇ ପକ୍ଷରେ କଶାମଙ୍ଗଳବାର ୫୫ ରବିବାର ପରଦିନ ଶୁକ୍ରବାର ପ୍ରତିଦିନ ନିର୍ବନ୍ଧ ହେଉଅଛି । ରବିବାର ବୈଷ୍ଣବମାନେ ପାଳିବେ, ଶୁକ୍ରବାର ସ୍ମାର୍ତ୍ତମାନେ ପାଳିବେ । ପୁରୋହିତେ ଜାଣନ୍ତି, ସ୍ମୃତି ଭଲ କରି ନ ବସ୍ତୁରି ଜଣାଇ ଅଛନ୍ତି । ମହାରାଜ ! ଅମୁକ ନାମା ସ୍ମୃତି ଉଚ୍ୟତେ—ମାରିଷ ଛଭିନ୍ନ ପାଳଙ୍ଗ ଭିନ୍ନତ୍ୱେ ସନ୍ତୁ କୋଶଳାର୍ଥୀ

---

୫୦-କାଲ୍—ବଧିର । ୫୧- ଜଲଦି—ଶୀଘ୍ର । ୫୨-ମାରି—ଦୂଷିତ । ୫୩-ଖୁନ୍ଦି—ଖୁରୁ ଆଘାତ । ୫୪-ଠାଙ୍କେଛେଚି—ଛେଚିବା । ୫୫-କଶାମଙ୍ଗଳବାର—ଆଶ୍ୱିନର ଶେଷ ମଙ୍ଗଳବାର । ୫୬- ମାରିଷ—କୋଶଳାବଲ୍ଲେଭଟିଆ—ରଚୟିତା ଏଠାରେ ସ୍ମୃତିର ଉକ୍ତି ନାମରେ କେତେକ ଭୁଲ ଶାଗ ଶବ୍ଦ ଯୁକ୍ତ ଅଶୁଦ୍ଧ ସଂସ୍କୃତ ବାକ୍ୟ ଲେଖିଛନ୍ତି; ଅନୁଲେଖକ ଦୋଷରୁ ଅଶୁଦ୍ଧି ବଢ଼ି ଯାଇଥିବା ସମ୍ଭବ ।

ନ ତୁରନୈର୍ଷା ଚୋତକ୍ତା ସମ୍ବନ୍ଧାବଚ୍ଛିନ୍ନ ଗନ୍ଧାବଚ୍ଛିନ୍ନ ଗନ୍ଧସା ଜନକତାବଚ୍ଛେଦକତ୍ୱଂ ଶ୍ରୁତିତ୍ୱଂ । ଶ୍ରୁତିବଦର୍ଥ ସଜ୍ଞାନସ୍ୟ ଶ୍ରୁତିବସ୍ତ୍ରଳ ଜ୍ଞାନସ୍ୟ ଚ । ଚମତ୍କୃତି ଜନକତମ୍। ଲେଜଟିଆ ବସ୍ତ୍ର ଚମତ୍କୃତି ଜନକତମ୍। କୋଶଳା ମାରୁଷୟୋ ବଷିପ୍ରିତା ସମ୍ବନ୍ଧେନାବଚ୍ଛେଦକତ୍ୱାତ୍ । ଘାଳଙ୍ଗ ଗନ୍ଧଣା ଧାନ୍ୟଂ ତରକନ୍ଷ୍ଟ୍ରା-ବଚ୍ଛେଦ କଟାପ୍ସୁ ସ୍ମୃତେ । ତଫ୍ୟଦଳତ୍ୱା ଲକ୍ଷଣଂ ସମଂଘନ୍ୟାପ୍ତଃ । ଘାଳଙ୍ଗ ଭିନ୍ନତ୍ୱାନବେଶଃ ଘାଳଙ୍ଗବଦର୍ଥ । ଜ୍ଞାନସ୍ୟ ଚମତ୍କୃତି ଜନକ-ତାବଚ୍ଛେଦକତ୍ୱାତ୍ତସ୍ୟା । ସୃତତ୍ୱା ନ ଭୂପଗମେନ ତସତ୍ୟ ବ୍ୟାପ୍ତିଃ କାରଣାପ୍ସୁ ଘାଳଙ୍ଗ ଭିନ୍ନତ୍ୱାନବେଶଃ ମାରୁଷ ବସ୍ତୁତେରପି କୋଶଳା ପ୍ରଭେଦୟୋ କୋଶଳାବଲ୍ଲେଭଟିଆଃ । ଅବ୍ୟାପ୍ତି କାରଣାପ୍ସୁ ମାରୁଷଃ ଭିନ୍ନତ୍ୱନବେଶଃ ମାରୁଷବସ୍ତୁତେରପି କୋଶଳା ପ୍ରଭେଦୟୋ କୋଶଳାବଲ୍ଲେଭଟିଆଃ ୫୭ ।”

ଏପରି ମୂର୍ଖହସ୍ତାଭିନୟରୁ ରାଜଗୁରୁ କି କହୁ ଅଛନ୍ତି ବୋଲି ମହାରାଜା ଦେୱାନଙ୍କୁ ପଚାରିବାରୁ ସେ ଜଣାଇଲେ “ମଣିମା ୫୭ ! ରାଜଗୁରୁ ଗୋସାଇଁଙ୍କର ସାତଶ ଊଣା ଅଠାଇଶ ଭରଣ ପର୍ବତ ଶିଖରେ ହବ୍ୟ ୫୮ ନଗ୍ରାଚଟ ଭୂମି ଅଛି । ସାହାଡ଼ା, ବାହାଡ଼ା, ଭଇଁଚ, ରହାଡ଼ି କୁରଡିଭଙ୍ଗା, ବାବଲ, କରଞ୍ଜ, କୋଚଲ ୫୯ ଇତ୍ୟାଦି ନାନା ପ୍ରକାର ଖନ୍ଦ ୬୦ ହୋଇଅଛି । ଖୁଲସ ୬୧ ପନ୍ଦର ବଖରା ଭିତରୁ ପାଞ୍ଚ ବଖରା ଅଧିକେ କୁଟୁମ୍ବ ରଖି ବାକି ତେର ବଖରା ଦୁଇପା'ରେ ହବ୍ୟ ଦୁଦୁରା, ଓଡ଼ଶମାର ୬୨ ବୁଣାଇ ଅଛନ୍ତି । ଏପରି

---

୫୭-ମଣିମା—ରାଜାଙ୍କ ସମ୍ବୋଧନ । ୫୮-ହବ୍ୟ—ମନୋହର । ୫୯-ସାହାଡ଼ା...କୋଚଲ—ବୃକ୍ଷନାମ, ଏ ବୃକ୍ଷଗୁଡ଼ିକ ଜାଳେଣି ଛଡ଼ା ଆଉ କିଛି ହେବାକୁ ଅନୁପଯୁକ୍ତ । ୬୦-ଖନ୍ଦ—ଫସଲ । ୬୧-ଖୁଲସ—ମେଲମୁଖୁଲା । ୬୨-ଦୁଦୁରା, ଓଡ଼ଶମାର—ଦୁଇ ବିଷାକ୍ତ ଫୁଲ ।

ଘରର ବଖରକୁ ଏଥି ଉତ୍ତରୁ ଯେବେ କାର୍ଯ୍ୟ ନ ଚଳନ୍ତି ବୋଲି ଜଣାଉ ଅଛନ୍ତି, ମହାରାଜା କଳ୍ପଦ୍ରୁମ ସାକ୍ଷାତ୍ ଆଖୁପର୍ବ ୬୩ ନ, ଆଉ ଦଶ ଗଛ ଦୁଦୁରକୁ ମହାରାଜା ଆଜ୍ଞା କଲେ କିଏ ସେ ନାହିଁ କରିବ, ଏଥିକି ଯେଂରାଇ ୬୪ ।

ପ୍ରଧାନ ସରଦାର କାଞ୍ଚି ବୈରିଗଞ୍ଜନ । ସେ ଗୋଡ଼ଯୋଡ଼ ପିଠି ଆଡ଼ କରି ଜଣାଇଲେ । "ଦେଉ ! ୬୫ ରାଧପତି ! ଶ୍ରୀଛାମୁରେ ୬୬ ଯେ ପୂର୍ବବୃତ୍ତ ଜଣାଇ ଅବଧାନ କଲେ । କଟୁଆଳର ଟିଣା ୬୭ କଥା ସରଦାରମାନଙ୍କର ନ ଗଲା ବୋଲି, ମହାପ୍ରଭୁ, ଆମେ ବୋଲିବାର କଥା ଏତିକି—ହଇହୋ କଟୁଆଳ ! ଚଟିଆଟିଏ ମାରି ସରକାରଙ୍କୁ ୬୮ ଫଡ଼ିଆ ଦିଅ । ପାଇମାନଙ୍କର ପୂଡ଼ା ୬୯ ନ ପହୁଞ୍ଚିଲା । ଦଶ ଘରଯାକ ତିନଦିନ ପର୍ଯ୍ୟନ୍ତ ମାଂସ ଖାଇ ପ୍ରିୟାପ୍ରୀତି ଘରମାନଙ୍କୁ ପଠିଆଇଲେ ବୋଲି ଧୋକା ୭୦ ହେବାକୁ ପାଇଲୁ । ଷୋଳଶ ତିରିଶ ବର୍ଷର ନପଟ ପିଲାମାନେ ପ୍ରାଣ ମୂର୍ଚ୍ଛି କରି ବଡ଼ ଖରରେ ଚେଚେଡ଼ ଚଟିଆ ଲଛୁ ୭୧ ଶଗଡରେ ପକାଇ ଆଣି ଛାମୁରେ ଦୃଶ୍ୟ କରାଇଲେ । କଟୁଆଳ ଖାମିନ୍ଦ ହୋଇ କରି ଯେ ଥିଲା, ଭଲ କରୁ ନୋହିଲେ ହେଲେ, ଲୁଗାପଟା ନ ମିଳିଲା ବୋଲି ଢଗପଟା ୭୨ ଯେହେଲେ ଦିଆଇ ପାରିଲା ନାହିଁ ? ମହାପ୍ରଭୁ, ଏତିକି ବୋଲିବାରୁ ପାଏ ୭୩ ପଡ଼ି ଶୋଇ ଯେତେ ଫଜିତ ୭୪

---

୬୩-ଆଖୁପର୍ବ—ଆଖୁର ପବ (କଳ୍ପଦ୍ରୁମ ସହ ଏହାର ଅହେତୁକ ତୁଳନା) ୬୪-ରାଇ—ରାୟ, ଆଜ୍ଞା । ୬୫-ଦେଉ—ଦେବ, ରାଜା । ୬୬-ଶ୍ରୀଛାମୁ—ରାଜାଙ୍କ ସମ୍ମୁଖ । ୬୭-ଟିଣା— ଅଳ୍ପ କଥାରେ ରାଗିଯିବା । ୬୮-ସରକାରଙ୍କୁ—ରାଜାଙ୍କ ଅସୁଲକୁ । ୬୯-ପୂଡ଼ା—ପୁଡ଼ିଆ ( ଏଠାରେ ମାଂସର ଭାଗ ) । ୭୦-ଧୋକା—ଠକହେବା । ୭୧-ଲଛୁ—ଗୁଳିକରି । ୭୨-ଢଗପଟ—ଦରବାସ । ୭୩-ପାଏ—ପାଦରେ । ୭୪-ଫଜିତ—ଅପମାନ ।

କଲି ପୁରୋହିତ ଗୋସାଇଁ ଆସି ଆଦ୍ୟରୁ ଗୋଚର କରିଅଛନ୍ତି । ଆମେ ଆଜ୍ଞା ପାଦୁକାରେ କିସ ଗୋଚର କରିବୁ ?"

ତହିଁରୁ ଲମ୍ପଟମାନେ କି ଠଉରାଇଲେ କି, ଗ୍ରାମୁ ୭୫ ଦିଗକୁ ଗୋଡ଼ ଯୋଡ଼ି ଓ ସାଷ୍ଟାଙ୍ଗ ହୋଇ ପାଏ ପଡ଼ି ଜଣାଇଲେ, "ମହାପ୍ରଭୁ ! ଏ କଥା ଯେବେ ସତ ତେବେ ନିପ୍ପୁମଠାଏ କରି ଆଜ୍ଞା ହୁଅନ୍ତୁ ୭୬ । ହାରି ହେବା ଦିନ ଆମ୍ଭଙ୍କୁ ସଭା ବେହରଣରେ ୭୭ ଏକା ଜଗାଇ ଆଜ୍ଞା ହୁଅନ୍ତୁ । ପୁରାଣପଣ୍ଡା ଗୋସାଇଁ ତ ନିତି ବସୁ ଅଛନ୍ତି, ଆମର ହିନେ । ହେଲେ ହେଲା, ତହିଁକି କି ହେଲା ? ସରଦାରମାନେ ବଡ଼ଲୋକଗୁଡ଼ାକ ହୋଇ ସେହା କଲା ଖୁକରଂ ଗୁଡ଼ାଙ୍କ ନାମରେ ଉଡ଼ାଇ କରି ୭୮ ଏତେ କଥାଟାଏ କହିଲେ ! ଆଜ୍ କାହିଁକି ପୃଥ୍ୱୀରେ ଅଗ୍ନି ବରଷିବ ? ମହାରାଜା ! ଲେଖାରେ ୭୯ ବଡ଼ ପଣ୍ଡା ଆମ୍ଭର ଦାଦା ହେବେ । ତାଙ୍କର ଆଣି ଆମ୍ଭର ଦଇବରେ ୮୦ ଶାଳୀ ହୁଅନ୍ତି । ତାଙ୍କୁ ଆମ୍ଭର ଟାପରା ୮୧ କି ରୂପରେ ହେଲେ । ମହାପ୍ରଭୁ ! ଉହ୍ନକଠାଉ ତଲେ କହିଲେ କାପରି ? ଏକ୍ଷଣେ ଦଉଡ଼ି ପଣ୍ଡାର ଝିଅଟା ପରା, ଆମ୍ଭର ବଡ଼ ବିନ୍ଦୁ ହେବେ, ତାଙ୍କୁ ମାହ ଧରି ପାଞ୍ଚ କି ଏଗାର କ୍ଳୀବ ଜଳି ୮୨ ଆରପାଖକୁ ଗଙ୍କୁଣ୍ଡାବଣ ଭିତରକୁ ଯାଇଥିଲୁ ।"

---

୭୫-ଗ୍ରାମୁ—ରାଜା । ୭୬-କଣ-ଆଜ୍ଞା ହୁଅନ୍ତୁ—ସଜା କରନ୍ତୁ, ୭୭-ବେହରଣ—ମଣ୍ଡପ, ସ୍ଥାନ, ୭୮-ଉଡ଼ାଇ କରି—ମିଥ୍ୟା ଅପବାଦ ଦେଇ, ୭୯-ଲେଖାରେ—ହିସାବରେ, ୮୦-ଦଇବରେ—ଦୈବାତ୍, ଯୋଗକୁ, ୮୧-ଟାପରା—ପରିହାସ, ୮୨-ଜଳି—ଚଢ଼ିଖାଇ,

ଏଥିରୁ କି ଜାଣି ଖନ୍ଦା-ବ୍ରାହ୍ମଣେ ୮୩ ଜଣାଇଲେ କି, "ଆଜ୍ଞା ! ଏ କଥା ସତ । ମୁଠା-ଘୁମର ୮୪, ଝୁଣ୍ଟସୁନ୍ଦର ୮୫, ପାନଭାଗଙ୍କ ତବକ ୮୬ ଇତ୍ୟାଦି ସେବା ତ ଆମ୍ଭର ନିଯୋଗ ୮୭ । ଶ୍ରୀଦଦା ଦେଉ ୮୮ ମହାରାଜା ତ ମହାବ୍ରାହ୍ମଣ୍ୟ ସାକ୍ଷାତ ହତଶ୍ରୀ ଥିଲେ । ପଇତା ଦେଖି ବିସୁଖ ପାଇବାରୁ ୮୯ ଏ ସମସ୍ତ ସେବା ଖନ୍ଦାଳବଡଶୋଇମାନଙ୍କ ୯୦ ମାରଫତ କରାଉଛନ୍ତି । ମାତ୍ର କେଶ ଧରିବାରୁ ଏ ପଞ୍ଚ ସେବା ଆମ୍ଭଙ୍କୁ ଅନୁଗ୍ରହ କରି-ଆଜ୍ଞା ହେଲେ ।"

ଏଥିରୁ କି ଯେନ ଚଆଞ୍ଜ-ପଟ୍ଟନାୟକ ୯୧ ଟଳି ୯୨ ଉଠି ଜଣାଇଲେ, "ମହାପ୍ରଭୁ ! ରୁଙ୍ଗଡ଼ାଘରେ କେହି ନ ଥିବା ସମୟରେ ମୁଁ ରଖିଥିବା ଲେଭଣ୍ଡୀ ଲୀଳାବତୀ ୯୩ ନିମନ୍ତେ ମାଗି ନେବାର ସାତ ହଜାର ବାହାରେ ଯେବେ ଦାଢ଼େ ୯୪ କଉଡ଼ି ଖାଇଥିବି ତେବେ ପରୁଶ ଲୋକରେ ଏକା ମୁସୁଦି ୯୫ ବୋଲି ଫଜିତ କରି-ଆଜ୍ଞା ହେବେ । ଚିତ୍ରଗୁପ୍ତ ପରି ସମର୍ଥ ରୂପବତି ପଟ୍ଟନାୟକ ଯାକ ରାଜଦିବସରେ ମିଶଇବାରେ ପାଞ୍ଚଡ଼ିକ ୯୬ ପଞ୍ଚାଣୋଇ ୯୭ ହେଲି ଯେ, ମହାରାଜା, ଆଜ ହୁଡ଼ି ୯୮ କି ରୂପେ ହେଲି ?"

---

୮୩-ଖନ୍ଦା-ବ୍ରାହ୍ମଣ—ରାନ୍ଧୁଣିଆ ୮୪-ମୁଠାଘୁମର—ରାଜାଙ୍କ ପାଖରେ ଘୁମର ବଜାଳନ, ୮୫-ଝଣ୍ଟ-ସୁନ୍ଦର—ରାଜାଙ୍କ ପାଖରେ ପାଣି ଓ ଗାମୁଛା ଧରି ରହିବା କର୍ମ, ୮୬-ତବକ—ଆଳଆ, ୮୭-ନିଯୋଗ—ରାଜକାର୍ଯ୍ୟ, ୮୮-ଶ୍ରୀଦଦା ଦେଉ—ପିତୃଦେବ, ୮୯-ବିସୁଖ ପାଇବା—ବିରକ୍ତ ହେବା, ୯୦-ଖନ୍ଦାଳବଡଶୋଇ—ରୋଷେଇକୁ ଜିନିଷ ଯୋଗାଇବା ଯାହାଙ୍କର ସେବା, ୯୧-ଚଆନ୍ଦ-ପଟ୍ଟନାୟକ—କରଣ ଉପାଧି ବିଶେଷ, ୯୨-ଟଳିବା—ରାଗିବା ୯୩-ଲେଭଣ୍ଡୀ ଲୀଳାବତୀ—ବେଶ୍ୟାବିଶେଷ, ୯୪-ଦାଢ଼େ—ଏକ କଉଡ଼ା କଉଡ଼ିର ୩୨ ଭାଗରୁ ଭାଗେ ୯୫ ମୁସୁଦି—ମାମଲତକାର, ୯୬-ଢଶକ—ଢନବୁଣେ, ୯୭-ପଞ୍ଚାଣୋଇ—ପଞ୍ଚାନବେ, ୯୮-ହୁଡ଼—ଭୁଲ,

ଏମନ୍ତ ସମୟରେ ଉତ୍ତର ଦେଶରୁ ମାଗଣ ଯନ୍ତ୍ରୀଟିଏ ଯେଉଁକି ଶ୍ରୀବୈଷ୍ଣବ ସମ୍ପ୍ରଦାୟ ତ୍ୟାଗୀଙ୍କ ଅନୁସନ୍ଧାନରେ ବୋଲି ଏକ ସଙ୍ଗୀତ ପ୍ରବୀଣ ଆସି ମାର୍ଗାନ୍ତର ଦ୍ୱାରରୁ ବାହା ହୋଇ ସେ ସ୍ଥଳେ ପ୍ରବେଶ ହୋଇ ରାଜାଙ୍କ ସମ୍ମୁଖରେ ମୂଳକାନ୍ତ କରି ଯନ୍ତ୍ର-ତାରରେ ଧନୁସ୍କାର କରଦଣ୍ଡ ଚଳାଇବାକୁ ଆରମ୍ଭିବାର ଦେଖି ରାଜା ତୁଣ୍ଡିଆକୁ ୯୯ ଆଜ୍ଞା କଲେ,

"ପରିବା ବର୍ଣ୍ଣ ଘାଣ୍ଟକ ହୋଇଅଛି ଏଥିରେ କଟାଯିବ ନାହିଁ । ସରକାରରୁ ପଇସା ଆଣି ଦିଅ" ବୋଲିବାରୁ, ଏହା ଉପରେ ସେ ଗୁଣୀ ଜାଣି ଜଣାଇଲେ, "ମହାପ୍ରଭୁ, ସଙ୍ଗୀତାଦିକ ବହୁତ ପରିଶୁଦ୍ଧ । ସାରଙ୍ଗ ଯନ୍ତ୍ର ଅନେକ ଜନକାମ୍ୟ ଗାନ୍ତୁଣ୍ଡ" ୧ । ତହିଁକି ରାଜା ଆଜ୍ଞା କଲେ "ଆମ୍ଭର ଖଦାରେ ଆମ୍ଭେ ଲ ପଡ଼ିନାହିଁ । ଭଜା, ସନ୍ତୋଳା, ରାଇ, ମନ୍ଥର, ଏପରି ତିଅଣ । ଏ ପରିବା ହୋଇଥିଲେ ଆମ୍ଭର ଘୋଡ଼ାଦାନା ଖଦା କରିବାର ଧୁଆଁର-ଶେଖରକୁ ବତାଇ ଦିଅ ।"

ଏମନ୍ତ ସମୟରେ ବର୍ଣ୍ଣବୈଚିତ୍ର କପିରାଜ ୨ ଗୋସାଇଁ ଆସି ଆଶୀର୍ବାଦ କରି ଶ୍ରୀ ମହାରାଜା କୀର୍ତ୍ତିପ୍ରତାପ ପ୍ରଶଂସାରେ କଳ୍ପନା କରିଥିବାର କବିତା ଶୁଣାଇଲେ । ଯଥା :—

କୀର୍ତ୍ତି ଧାନସିଝା-ହାଣ୍ଡି ମଣ୍ଡଳା ଭୂମି ମଣ୍ଡନ
ପ୍ରତାପ ଅସ୍ତଚନ୍ଦ୍ର ପରି ଶୈବାଳରୁ ଚମୁଟି ଚମୁଟି
ଏପରି ସ୍ତୁତିମୁଖରେ ଅନ୍ନ ନିମନ୍ତେ ପେଟ ଦେଖାଇ କହି,
ଆନ୍ନଂ ତାନେକୁ ଲେଦୁ

---

୯୯-ତୁଣ୍ଡିଆ—ବୋଲ୍‌କରା, ପିଅନ, ୧-ତେଲୁଗୁ ବାକ୍ୟଟିରେ ଅଶୁଦ୍ଧି ରହିଛି, ୨-କପିରାଜ—କବିଶ୍ରେଷ୍ଠ ଅର୍ଥରେ 'କବିରାଜ'ର ବ୍ୟଙ୍ଗ

ଖରଚକୁ ନ ମିଳିଲେ ଓ୍ୱନ୍ତି ବାମା କ୍ୟା କରୁଙ୍ଗା ॥
ଏ ଶ୍ଳୋକାର୍ଥ କହିବା ସମୟରେ ସନ୍ତୋଷ ହୋଇଁ ପର୍ବ୍ବର-ଆଜ୍ଞା କଲେ, "ଗୋସାଇଁ, ଆଜ୍ଞ ପ୍ରାକୃତରେ ଚଉପଦୀ ହେଉବା ବୋଲି ଯାଇଅଛି କି ?"

କପିରାଜ ଜଣାଇଲେ, "ମହିମା ! ଲଙ୍କାମରିଚ ରାଗ, କଳାହାଣ୍ଡିଆ ଚାଳ, ପିଲାମାନଙ୍କର ମାଆ ନ ଥାଇ ଲସ୍ପେ, କଳ୍ପ-ପ୍ରେମାଳଙ୍କାରରେ ଦଉ ସରସ ଚଉପଦୀ ବୋଲି ଯାଇଅଛି । ଅବଶ୍ୟ ଚିତ୍ତକୁ ଆସୁ । ନାଟରେ ସାବଧାନ ହୋଇ ଶୁଣିବାକୁ ଆଜ୍ଞା ହୁଅନ୍ତୁ ।"

ଗୀତ :—

ଚ ଚ ଚ ଉ ଉ ଉ ପ ପ ପ ଦୀ ଦୀ ଦୀ ଗୀ ଗୀ ଗୀ ତ ତ ତ
ହେଲା ରେ, ଛ ଲିତ ଯୋଗ୍ୟ ହେଲାରେ,
ନରପାଳ ଭଣ୍ଡାରକର୍ଣ୍ଣ ଭଣିଲେ ରେ ॥

ଏପରି ଗନ୍ଧର୍ବ ଯଶକାଶ ପ୍ରକାଶ କରାଇବାର ସଙ୍ଗୀତ ସମାପ୍ତ ହେଲା । ଓଡ଼ିଆ ଦେଶର ଗୁଣୀଙ୍କ, କପିରାଜଙ୍କୁ ମଧ୍ୟ, ମୂନ ଥିବାର ସହସେ ଷୋଳ ଲେଖାରେ ଧୁନଆ ଲଗ୍ନ[୩] ; ମୂନ ଥିବାର ମୂକୁତା ବର୍ତ୍ତମାନ ହଆଗଲା । ଚୂମ୍ ଚୂମ୍ କରି ଶ୍ବେପଦାର[୪] ଡାକିଲା, ଧାଙ୍ଗଡ଼ୀ ପଠୂଆର ହେଲା । ବେହରଣ ବରଖାସ୍ତ[୫].

---

୩-ଲଗ୍ନ—ଦେହରେ ତପ୍ତଧାତୁର ଦାଗ, ୪-ଶ୍ବେପଦାର—ରାଜାଙ୍କ ଆଗେ ଆଗେ ରାଜାଙ୍କ ଗମନ ଘୋଷଣା କରିବା ସେବକ, ୫-ବେହରଣ ବରଖାସ୍ତ—ସଭାଭଙ୍ଗ,

ହେଲା, ମଥାରେ ମହାରାଜା ଉଭା ହେଲେ । ରାଜଗୁର୍ବାଦ ୬ ସମସ୍ତେ ମେଲାଣି ହେଲେ । ମଥାରେ ତେଲ ଲଗାଇ ଶ୍ରୀ ମହାରାଜା ଅନ୍ତଃ-ପୁରାଭିମୁଖ ହୋଇ ବିଜେ କଲା ସମୟରେ ପ୍ରଥମ ଦ୍ୱାରୁ ଢକାନାଦ, ଦ୍ୱିତୀୟ ଦ୍ୱାରୁ ଭାଇଦାଦମାନେ, ତୃତୀୟ ଦ୍ୱାରୁ ସେପାଇ ଭଲଟେଲିକେ, ଚତୁର୍ଥ ଦ୍ୱାରୁ ନିଯୋଗ ଭଲଲୋକେ, ଉତର ଦ୍ୱାରୁ ତୁରୁକ ୭ ସିପାଇମାନେ ଜୁହାର ହୋଇଗଲେ । ଅନ୍ତଃପୁରରେ ବିଜେ ହେଲେ । ପୂର୍ବୋକ୍ତ ପ୍ରକାରରେ ମଣୋହି ବଢ଼ାଇ ପଟ୍ଟଦେଈ ୮ ସାମନ୍ତାଣୀଙ୍କ ଅନ୍ତଃପୁରରେ ପହୁଡ଼ ହେଲା ।

ଶ୍ରୀ ହୈତ ବଦ୍ୟାବତାର ଶୀର୍ଥଭୂତ ଧ୍ୱଜାରୂପୁତ
କୃତ ବ୍ରୁଦ୍ଧାକ ଗର୍ବ-ପର୍ବତ ଧ୍ୱଂସ ବଜ୍ରୋଳ
ପାଷାଣ୍ଡମଣ୍ଡଳ ମଣ୍ଡଳାନ୍ଧକାର ପର୍ବ-ଶର୍ବରୀଶ
ବୀର ଶ୍ରୀ କୃଷ୍ଣ ଚୈତନ୍ୟଚନ୍ଦ୍ର ଗୁରୁ ଚରଣାରବିନ୍ଦ
ନିଃସ୍ୟନ୍ଦମାନାମନ୍ଦ ମକରନ୍ଦ ବିନ୍ଦୁ ସନ୍ଦୋହ
ଚତୁରକ୍ତ ଚୂଡ଼ାଳଙ୍କାରଣଂ ବାବହବହଳ ।

ବହ୍ନିନାଶ ସୁଧା ଧବଳତ ବର୍ଗ ପ୍ରସାଦ
ସଙ୍ଗୀତ-ସାହିତ୍ୟ-ରତ୍ନାକର କରୁଣାନିଧାନ
ଧାରଣବଦ୍ଧାନ ବଦାନ୍ୟ ଗୁଣ ସମୃଦ୍ଧି ମୂର୍ଦ୍ଧନ୍ୟ ।

---

୬-ରାଜପୁର୍ବାଦ—ରାଜପୁରୁ ଆଦି । ୭-ତୁରୁକ—ମୁସଲମାନ, ତୁର୍କ ଶରଜ, ୮-ପଟ୍ଟଦେଈ—ପାଟରାଣୀ,

ଚଣ୍ଡୀମଣ୍ଡିତଗଣ୍ଡ ଗଜବ୍ରଜାଷ୍ଟ ପୂର୍ବଗଷ୍ଟାଧିନାଥ
ଶରଣପଞ୍ଜର ମାନଜଙ୍ଘାରଣ ରମଣୀ ରଣରଣରଣ ...
ପଦାମରାମ ପ୍ରଚୁଷା ପୁରଃସର ଶ୍ରୀ ବାଲୁଙ୍କେଶ୍ବର ଶ...ଣ
ହରିଚନ୍ଦନ ଶ୍ରୀ ଜଗଦ୍ଦେବ ମହୀମହେନ୍ଦ୍ର ଦେବକେଶ୍ବରବଣର
କଲ୍ୟତୋ ହାସ୍ୟକଲ୍ଲୋଳମ୍ ॥ ୯



୯-ଆଠଗଡ ରାଜା ବାଲୁଙ୍କେଶ୍ବର ହରିଚନ୍ଦନ ଜଗଦ୍ଦେବଙ୍କ ନାମରେ ଭଣିତ ଏହି ବରୁଦରେ ଅନେକ ଅଂଶର ପାଠ ଅଶୁଦ୍ଧ ରହିଛି ।

